Approved by the T. B. C. Madras & Orissa

# ଆଦର୍ଶ ବ୍ୟାକରଣ

ସୁରଙ୍ଗୀ [illegible]ର ପ୍ରଧାନ ସଂସ୍କୃତ ଅଧ୍ୟାପକ

ବର୍ଣ୍ଣ, ବଦ୍ଧା[illegible] ଏବଂ ମାନ୍ଦ୍ରାଜର ଭୂତପୂର୍ବ ଗଭର୍ଣ୍ଣମେଣ୍ଟ ପରୀକ୍ଷକ

## ସାମନ୍ତ ନାରାୟଣ ଶିରୋମଣି

ପ୍ରଣୀତ ଓ ପ୍ରକାଶିତ

ଷଷ୍ଠ ମୁଦ୍ରଣ

*Printed at*

**THE STORE PRESS**

**BERHAMPUR**

( GANJAM )

1941

As. 2½ ଦଶପଇସା ମାତ୍ର

# ସୂଚୀପତ୍ର

# ଆଦର୍ଶ ବ୍ୟାକରଣ

## ପ୍ରଥମ ଭାଗ

ଯାହା ଜାଣିଲେ ଶୁଦ୍ଧ କରି ଲେଖି, ପଢ଼ି ଓ କହି ପାରିବା
ତାହାକୁ ବ୍ୟାକରଣ କହନ୍ତି ।

### ବର୍ଣ୍ଣ

ଉ ଇ ଅ ଉ ଓ ଉ ଉ ଆ—ଏ ଗୁଡ଼ିକ ବର୍ଣ୍ଣ । ଏହାପରି ଅନେକ ବର୍ଣ୍ଣ ଅଛି । ଉଇ—କହିଲେ 'ଉ' ଗୋଟିଏ ବର୍ଣ୍ଣ, 'ଇ' ଗୋଟିଏ ବର୍ଣ୍ଣ । ଆଉ—କହିଲେ 'ଆ' ଗୋଟିଏ ବର୍ଣ୍ଣ, 'ଉ' ଗୋଟିଏ ବର୍ଣ୍ଣ । ଓଅ—କହିଲେ 'ଓ' ଗୋଟିଏ ବର୍ଣ୍ଣ, 'ଅ' ଗୋଟିଏ ବର୍ଣ୍ଣ । ଅକ୍ଷରକୁ **ବର୍ଣ୍ଣ** କହନ୍ତି ।

ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ଏ, ଐ, ଓ, ଔ, ଂ, ଁ, ଃ, କ, ଖ, ଗ, ଘ, ଙ; ଚ, ଛ, ଜ, ଝ, ଞ; ଟ, ଠ, ଡ଼, ଢ଼, ଣ; ତ, ଥ, ଦ, ଧ, ନ; ପ, ଫ, ବ, ଭ, ମ; ଯ, ର, ଲ, ଵ; ଶ, ଷ, ସ, ହ—ଏହି ସବୁ ମିଶି ଅଣଚାଶ ବର୍ଣ୍ଣ । ମାତ୍ର ଓଡ଼ିଆ ଭାଷାରେ 'ୠ' 'ଌ' ଏବଂ ଅନ୍ତଃସ୍ଥ 'ବ'ର ବ୍ୟବହାର ପ୍ରାୟ ଦେଖାଯାଏ ନାହିଁ ।

'ଅ' ଠାରୁ 'ଔ' ପର୍ଯ୍ୟନ୍ତ, ପୁଣି ଂ, ଁ, ଃ, ମିଶି ଷୋହଳଟି ସ୍ୱରବର୍ଣ୍ଣ । ଏହା ହ୍ରସ୍ୱ, ଦୀର୍ଘ ଓ ଅଯୋଗବାହ ଏପରି ତିନି ଭାଗରେ ବଣ୍ଟାଯାଏ ।

ଅ, ଇ, ଉ, ଋ, ଌ—ଏହି ପାଞ୍ଚଟି **ହ୍ରସ୍ୱ ସ୍ୱର**। ଆ, ଈ, ଊ, ୠ, ଏ, ଐ, ଓ, ଔ—ଏହି ଅଠଟି **ଦୀର୍ଘସ୍ୱର**। ଂ, ଁ, ଃ,—ଏହି ତିନୋଟି **ଅଯୋଗବାହ ସ୍ୱର**।

କ ଠାରୁ ହ ପର୍ଯ୍ୟନ୍ତ ଏହି ତେତିଶଟି **ବ୍ୟଞ୍ଜନ ବର୍ଣ୍ଣ** *। ଏହା ବର୍ଗ୍ୟ, ଅନ୍ତଃସ୍ଥ ଓ ଉଷ୍ମ ନାମରେ ତିନି ଭାଗ ହୋଇ କଣାଯାଏ।

ବ୍ୟଞ୍ଜନ ବର୍ଣ୍ଣମାନଙ୍କ ମଧ୍ୟରେ କ ଠାରୁ ମ ପର୍ଯ୍ୟନ୍ତ ପଚିଶଟିକୁ **ବର୍ଗ୍ୟ ବର୍ଣ୍ଣ** ବୋଲାଯାଏ—

କ, ଖ, ଗ, ଘ, ଙ ଏହି ପାଞ୍ଚଟି କ ବର୍ଗ
ଚ, ଛ, ଜ, ଝ, ଞ ଏହି ପାଞ୍ଚଟି ଚ ବର୍ଗ
ଟ, ଠ, ଡ, ଢ, ଣ ଏହି ପାଞ୍ଚଟି ଟ ବର୍ଗ
ତ, ଥ, ଦ, ଧ, ନ ଏହି ପାଞ୍ଚଟି ତ ବର୍ଗ
ପ, ଫ, ବ, ଭ, ମ ଏହି ପାଞ୍ଚଟି ପ ବର୍ଗ
ଯ, ର, ଲ, ବ ଏହି ଚାରିଟି **ଅନ୍ତଃସ୍ଥ** ବର୍ଣ୍ଣ
ଶ, ଷ, ସ, ହ ଏହି ଚାରିଟି **ଉଷ୍ମ** ବର୍ଣ୍ଣ

ସ୍ୱରବର୍ଣ୍ଣଗୁଡ଼ିକ ନିଜେ ଉଚ୍ଚାରିତ ହୋଇ ଥାଆନ୍ତି। ମାତ୍ର ସ୍ୱର ବର୍ଣ୍ଣର ସାହାଯ୍ୟ ବିନା ବ୍ୟଞ୍ଜନବର୍ଣ୍ଣ ଉଚ୍ଚାରିତ ହୋଇ ପାରେ ନାହିଁ।

ର୍ ଷ୍ ଇ—ଏହି ତିନି ବର୍ଣ୍ଣରେ **ଋଷି** ହେଲା।
ଧ୍ ଇ କ—ଏହି ତିନି ବର୍ଣ୍ଣରେ **ଧିକ୍** ହେଲା।

---

* କାହାରି ମତରେ—'ଅ' ଠାରୁ 'ଔ' ପର୍ଯ୍ୟନ୍ତ ଏହି ତେରଟି ସ୍ୱରବର୍ଣ୍ଣ, 'କ' ଠାରୁ 'ହ' ପର୍ଯ୍ୟନ୍ତ ପୁଣି ଅଯୋଗବାହ ମିଶି ଛତିଶଟି ବ୍ୟଞ୍ଜନ ବର୍ଣ୍ଣ। ଏହା ପୁରାଣ ପ୍ରସିଦ୍ଧ ଅର୍ଥ ଓଡ଼ିଆ ଭାଷାର ପ୍ରକୃତ ବିଧାନ ନୁହେଁ।

ଘ୍ ଅ, ର୍ ଅ—ଏହି ଚାରି ବର୍ଣ୍ଣରେ **ଘର** ହେଲା ।

ଗ୍ ଉ, ଲ୍ ଅ—ଏହି ପାଞ୍ଚ ବର୍ଣ୍ଣରେ **ଗୁଲ୍ମ** ହେଲା ।

ଦ୍ ଏ, ବ୍ ଅ, କ୍ ଈ—ଏହି ଛଅ ବର୍ଣ୍ଣରେ **ଦେବକୀ** ହେଲା ।

ଅନୁଶୀଳନୀ—

(୧) ବ୍ୟାକରଣ ଜାଣିଲେ କି ଉପକାର ହୁଏ ?

(୨) ହ୍ରସ୍ୱ, ଦୀର୍ଘ ଓ ଅଯୋଗବାହ ସ୍ୱର କଏ ?

(୩) ବର୍ଗୀୟ ବର୍ଣ୍ଣ କାହାକୁ କହନ୍ତି ?

(୪) ବର୍ଗୀୟ 'ଙ' ଅନ୍ତଃସ୍ଥ 'ଯ' ଏପରି ନାମ କାହିଁକି ?

(୫) ଉଷ୍ମ ବର୍ଣ୍ଣ ଥିବା ଗୁଡ଼ିଏ ଉଦାହରଣ ଦେଖାଅ ।

(୬) କେଉଁ ବର୍ଣ୍ଣ ମିଳିଲେ ଋଷି, ଗୁଲ୍ମ, ବିଦ୍ୟା, ଦସ୍ୟୁ—ଏ ଗୁଡ଼ିକ ହେବ ?

---

## ଶବ୍ଦ

ଏ, ନନା, ତେଲ, କାଚ, ରତ୍ନ, ହରିଣ, ମୟୂର—ଏ ଗୁଡ଼ିକ ଗୋଟିଏ ଗୋଟିଏ ଶବ୍ଦ । ଏହିପରି ଆଉ ଅନେକ ଶବ୍ଦ ଅଛି । ଏ ପ୍ରତ୍ୟେକ ଶବ୍ଦ ଗୋଟିଏ ବା ଅଧିକ ବର୍ଣ୍ଣରେ ଗଢ଼ା ହୋଇଅଛି ଏବଂ ଏ ଗୁଡ଼ିକର ଅର୍ଥ ଅଛି ।

'ଏ' କହିଲେ ଏହା ବୋଲି ବୁଝାଏ । 'ନନା' କହିଲେ ପିତାଙ୍କୁ ବୁଝାଏ । 'ତେଲ' କହିଲେ ଏକ ପ୍ରକାର ଚିକ୍କଣିଆ ତରଳ ପଦାର୍ଥକୁ ବୁଝାଏ । 'କାଚ' କହିଲେ ଏକ ପ୍ରକାର ସ୍ୱଚ୍ଛ ପଦାର୍ଥକୁ ବୁଝାଏ । 'ରତ୍ନ' କହିଲେ କେତେ ଗୁଡ଼ିଏ ସୁନ୍ଦର ପଦାର୍ଥକୁ ବୁଝାଏ । 'ହରିଣ' କହିଲେ ପାଞ୍ଚ ମୃଗ ମଧ୍ୟରୁ ଏକ ଜାତି ପଶୁକୁ ବୁଝାଏ । 'ମୟୂର' କହିଲେ ଚନ୍ଦ୍ରିକା ଥିବା ଏକ ଜାତି ସୁନ୍ଦର ପକ୍ଷୀକୁ ବୁଝାଏ ।

ଅର୍ଥ ଥିଲେ ଗୋଟିଏ ବର୍ଣ୍ଣରେ ବା ଏକାଧିକ ବର୍ଣ୍ଣରେ ଶବ୍ଦ ହୁଏ । ଅର୍ଥ ନଥିଲେ କେତେ ଗୁଡ଼ିଏ ବର୍ଣ୍ଣ ମିଳିଲେ ମଧ୍ୟ ଶବ୍ଦ ହେବ ନାହିଁ । ତହା, ଡୁଘ, ରଲପି—ଏ ଗୁଡ଼ିକୁ ଶବ୍ଦ ବୋଲିଯାଏ ନାହିଁ ।

---

## ବାକ୍ୟ

ଦୁର୍ଗା ଆସୁଅଛି, ବତାସ ହେଲା, ସେ ପିଠା ଖାଇବ, ନନାଙ୍କ କଥା ଶୁଣ—ଏ ଗୁଡ଼ିକ ବାକ୍ୟ । ଏହିପରି ଆଉ ଅନେକ ବାକ୍ୟ ଅଛି ।

'ଦୁର୍ଗା ଆସୁଅଛି' ଏହା ଗୋଟିଏ ବାକ୍ୟ । ଏଥିରେ 'ଦୁର୍ଗା' ଗୋଟିଏ ପଦ, 'ଆସୁଅଛି' ଗୋଟିଏ ପଦ, ଏପରି ଯୋଡ଼ିଏ ପଦ ଅଛି । 'ବତାସ ହେଲା' ଏହା ଗୋଟିଏ ବାକ୍ୟ । ଏଥିରେ 'ବତାସ' ଗୋଟିଏ ପଦ, 'ହେଲା' ଗୋଟିଏ ପଦ, ଏପରି ଯୋଡ଼ିଏ ପଦ ଅଛି । 'ସେ ପିଠା ଖାଇବ' ଏହା ଗୋଟିଏ ବାକ୍ୟ । ଏଥିରେ 'ସେ' ଗୋଟିଏ ପଦ, 'ପିଠା' ଗୋଟିଏ ପଦ, 'ଖାଇବ' ଗୋଟିଏ ପଦ, ଏପରି ତିନୋଟି ପଦ ଅଛି । 'ନନାଙ୍କ କଥା ଶୁଣ' ଏଥିରେ ନନାଙ୍କ, କଥା, ଶୁଣ, ଏହି ତିନିଗୋଟି ପଦ ଅଛି ।

'ଆସୁଅଛି' କେବଳ ଏତିକି କହିଲେ ଅର୍ଥ ପୂର୍ଣ୍ଣରୂପେ ପ୍ରକାଶ ପାଉନାହିଁ, ଏଣୁ କେବଳ ଏତିକିରେ ବାକ୍ୟ ହେଲା ନାହିଁ । 'ଦୁର୍ଗା' ଆସୁଅଛି କହିଲେ, ଅର୍ଥ ପୂର୍ଣ୍ଣରୂପେ ପ୍ରକାଶ ପାଇଲା; ଏଣୁ ଏହା ବାକ୍ୟ । ସେହିପରି କେବଳ 'ବତାସ' କହିଲେ ବାକ୍ୟ ହେବନାହିଁ 'ବତାସ' ହେଲା' କହିଲେ ବାକ୍ୟ ହେବ । 'ନନାଙ୍କ ଶୁଣ' କହିଲେ ବାକ୍ୟ ହେବ ନାହିଁ; 'ନନାଙ୍କ କଥା ଶୁଣ' କହିଲେ ବାକ୍ୟ ହେବ ।

ଯହିଁରେ ଅର୍ଥ ପୂର୍ଣ୍ଣରୂପେ ପ୍ରକାଶ ପାଏ ତାହାକୁ **ବାକ୍ୟ** କହନ୍ତି । ପ୍ରତ୍ୟେକ ବାକ୍ୟରେ **ଦୁଇ ବା ତହିଁରୁ ଅଧିକ** ଶବ୍ଦ ଥାଏ । ଶବ୍ଦ ବାକ୍ୟରେ ବ୍ୟବହୃତ ହେଲେ ପଦ ବୋଲାଏ ।

ଅନୁଶୀଳନୀ— । ୧ । ଯୋଡ଼ିଏ ଯୋଡ଼ିଏ ପଦରେ ଗଢ଼ା ଗୁଡ଼ିଏ ବାକ୍ୟ କୋଲ । ୨ । ତିନି ତିନିଟି ପଦରେ ଗଢ଼ା ତିନି ଗୋଟି ବାକ୍ୟ ବୋଲ । । ୩ । ପାଞ୍ଚ ପାଞ୍ଚ ଗୋଟି ପଦରେ ଗଢ଼ା ଯୋଡ଼ିଏ ବାକ୍ୟ ବୋଲ ।

## ବାକ୍ୟ ପ୍ରସାରଣ

'ଘୋଡ଼ା ଯାଉଅଛି' ଏହା ଗୋଟିଏ ବାକ୍ୟ । ଏଥିରେ ଯୋଡ଼ିଏ ପଦ ଅଛି । କେଉଁ ଘୋଡ଼ା ଯାଉଅଛି ? ପଚାରିଲେ, ଉତ୍ତର ହୋଇପାରେ—'ବଡ଼ ଘୋଡ଼ା ଯାଉଅଛି' ।

ପ୍ରଶ୍ନ—କାହାର ବଡ଼ ଘୋଡ଼ା ଯାଉଅଛି ?
ଉତ୍ତର—ରାଜାଙ୍କ ବଡ଼ ଘୋଡ଼ା ଯାଉଅଛି ।
ପ୍ରଶ୍ନ—କେଉଁ ଠାକୁ ଯାଉଅଛି ?
ଉତ୍ତର—ରାଜାଙ୍କର ବଡ଼ ଘୋଡ଼ା ଦରବାର ପଡ଼ିଆକୁ ଯାଉଅଛି ।
ପ୍ରଶ୍ନ—କେଉଁଠାରୁ ଦରବାର ପଡ଼ିଆକୁ ଯାଉଅଛି ?
ଉତ୍ତର—ରାଜାଙ୍କର ବଡ଼ ଘୋଡ଼ା ଘୋଡ଼ାଶାଳରୁ ଦରବାର ପଡ଼ିଆକୁ ଯାଉଅଛି ।
ପ୍ରଶ୍ନ—କପରି ଯାଉଅଛି ?
ଉତ୍ତର—ରାଜାଙ୍କର ବଡ଼ ଘୋଡ଼ା ଘୋଡ଼ାଶାଳରୁ ଦରବାର ପଡ଼ିଆକୁ ଧୀରେ ଧୀରେ ଯାଉଅଛି ।

ଅତଏବ ଦେଖାଗଲା ଯେ, 'ଘୋଡ଼ା ଯାଉଅଛି,' ଏହି କ୍ଷୁଦ୍ର ବାକ୍ୟଟି ନାନା ପଦ ଯୋଗେ କ୍ରମେ କ୍ରମେ ବଢ଼ି 'ରାଜାଙ୍କର ବଡ଼ ଘୋଡ଼ା ଘୋଡ଼ାଶାଳରୁ ଦରବାର ପଡ଼ିଆକୁ ଧୀରେ ଧୀରେ ଯାଉଅଛି' ଏହି ବଡ଼ ବାକ୍ୟଟି ହେଲା । ଏହି ବଡ଼ ବାକ୍ୟରେ ଯେତେ ଗୁଡ଼ିଏ

ପଦ ଅଛି ଏବଂ ଏପରି ବଡ଼ ବା ସାନ ବାକ୍ୟରେ ଯେତେ ଗୁଡ଼ିଏ ପଦ ଥାଏ, ସେଥିରେ କେଏ କ ପ୍ରକାର ପଦ ତାହା ଜାଣିବା ଅବଶ୍ୟକ ।

## ବିଶେଷ୍ୟ

ରଘୁ, ସେବତୀ, ଖଣ୍ଡଗିରି, ପଣସ, କୁଆ—ଏ ଗୋଟିଏ ଗୋଟିଏ ବିଶେଷ୍ୟ ।

'ରଘୁ ଅସୁଅଛି' ଏହି ବାକ୍ୟରେ, 'ରଘୁ' ଗୋଟିଏ ବାଳକର ନାମ । 'ସେବତୀ ପଢୁଅଛି'—ଏଠାରେ 'ସେବତୀ' ଗୋଟିଏ ବାଳିକାର ନାମ । 'ଖଣ୍ଡଗିରି ଦିଶୁଅଛି'—ଏଠାରେ 'ଖଣ୍ଡଗିରି' ଗୋଟିଏ କ୍ଷୁଦ୍ର ପର୍ବତର ନାମ । 'ପଣସ ପାଚିଲାଣି'—ଏଠାରେ 'ପଣସ' ଏକ ଜାତି ଫଳର ନାମ । 'କୁଆ ବୋବାଉଅଛି'—ଏଠାରେ କୁଆ ଏକ ପ୍ରକାର ପକ୍ଷୀର ନାମ ।

ରଘୁ, ସେବତୀ, ଖଣ୍ଡଗିରି, ପଣସ, କୁଆ—ଏ ଗୁଡ଼ିକ ଗୋଟିଏ ଗୋଟିଏ ନାମ । ଏମାନଙ୍କୁ ବିଶେଷ୍ୟ ବୋଲିଯାଏ ।

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟ ଗୁଡ଼ିକରେ ବିଶେଷ୍ୟ ଥିଲେ ଦେଖାଇ ଦିଅ—

୧ । ହରିଣ ନଦୀ ଧରୁ । ୩ । ପାଣିଧଣ୍ଡ ବେଙ୍ଗ ଧରିଅଛି ।
୨ । ମାର୍ଜାର ବୁଲୁଅଛି । ୪ । କାଲି ଗ୍ରହଣ ହେବ ।

(ଖ) ନିମ୍ନଲିଖିତ ବିଶେଷ୍ୟ ପଦମାନଙ୍କରୁ ଗୋଟିଏ ଗୋଟିଏ ନେଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼—ଲୁଙ୍କାଆମ୍ବ, କଡ଼ାଅଣ୍ଡା, ଗୁଆ, ଆଖୁ, ଲକ୍ଷ୍ମଣ, ଚନ୍ଦ୍ର ।

ସୁନା, ରୁପା, ପାଣି, ପଥର, ମାଟି—ଏ ଗୁଡ଼ିକ ଗୋଟିଏ ଗୋଟିଏ ବସ୍ତୁର ନାମ, ଏଣୁ ଏ ଗୁଡ଼ିକୁ ବସ୍ତୁବାଚକ ବିଶେଷ୍ୟ ବୋଲିଯାଏ ।

ଅନନ୍ତ, ଗୋପୀନାଥ, ବନମାଳୀ, ଅର୍ଜୁନ, ସୀତା—ଗୋଟିଏ ଗୋଟିଏ ବ୍ୟକ୍ତିବାଚକ ବିଶେଷ୍ୟ ।

'ଅନନ୍ତ' କହିଲେ ଜଣକୁ ବୁଝାଇବ । 'ଗୋପୀନାଥ' କହିଲେ ଜଣକୁ ବୁଝାଇବ । ସେହିପରି ବନମାଳୀ, ଅର୍ଜୁନ, ସୀତା, ଚମ୍ପା—ଏମାନେ ଜଣ ଜଣକୁ ବୁଝାଇବ । 'ଅନନ୍ତ' ଜଣକର ବା ଗୋଟିଏ ବ୍ୟକ୍ତିର ନାମ, ଏଣୁ ଏହା ବ୍ୟକ୍ତିବାଚକ ବିଶେଷ୍ୟ । ମାତ୍ର 'ମନୁଷ୍ୟ' କହିଲେ—ଅନନ୍ତ, ଗୋପୀନାଥ, ବନମାଳୀ, ଅର୍ଜୁନ, ସୀତା, ଚମ୍ପା ପ୍ରଭୃତି ଅନେକଙ୍କୁ ବୁଝାଇବ । ଜଣେ ବୁଝାଇବ ନାହିଁ ।

ମନୁଷ୍ୟ, ସ୍ତ୍ରୀ, ମେଣ୍ଢା, ଗଧ, ଘୋଡ଼ା ପ୍ରଭୃତି ଏ ପ୍ରତ୍ୟେକ ଗୋଟିଏ ଗୋଟିଏ ଜାତିର ନାମ । ଏଣୁ ଏ ଗୁଡ଼ିକ ଜାତିବାଚକ ବିଶେଷ୍ୟ ।

'ନଦୀ' କହିଲେ—ଗଙ୍ଗା, ଯମୁନା, ଗୋଦାବରୀ, ବ୍ରାହ୍ମଣୀ, ଋଷିକୁଲ୍ୟା, ମହାନଦୀ ପ୍ରଭୃତି ସମସ୍ତଙ୍କୁ ବୁଝାଇବ । ଏଣୁ 'ନଦୀ' ଜାତିବାଚକ ବିଶେଷ୍ୟ । 'ବିଦ୍ୟାଳୟ' ଜାତିବାଚକ ବିଶେଷ୍ୟ । ମାତ୍ର କାଳିର ବର, ଫାସିଦିଆ ବର, କଳ୍ପବଟ—ବ୍ୟକ୍ତିବାଚକ ବିଶେଷ୍ୟ । 'ନଗର' ଜାତିବାଚକ ବିଶେଷ୍ୟ । ମାତ୍ର ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ, କାଶୀ, କଲିକତା, ଦିଲ୍ଲୀ—ବ୍ୟକ୍ତିବାଚକ ବିଶେଷ୍ୟ ।

ଦୟା, ବିନୟ, ପାଣ୍ଡିତ୍ୟ, ବୀରତ୍ୱ, ବଡ଼ପଣିଆ—ଏ ଗୁଡ଼ିକ ଗୋଟିଏ ଗୋଟିଏ ଗୁଣର ନାମ । ଏଣୁ ଏ ଗୁଡ଼ିକ ଗୁଣବାଚକ ବିଶେଷ୍ୟ ।

ପିଇବା, ଡେଇଁବା, ଦେଖିବା, ପଠନ, ବର୍ଣ୍ଣନ ପ୍ରଭୃତି ଗୋଟିଏ ଗୋଟିଏ କ୍ରିୟାର ନାମ ବା କ୍ରିୟାବାଚକ ବିଶେଷ୍ୟ ।

ପିଇବା—କହିଲେ ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଏ । ସେହିପରି ଡେଇଁବା, ଦେଖିବା, ହସିବା, ପଠନ, ପାଳନ, ଭ୍ରମଣ କହିଲେ

ଗୋଟିଏ ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଏ । ଏଣୁ ଏ ଗୁଡ଼ିକ କ୍ରିୟାବାଚକ ବିଶେଷ୍ୟ ।

## ବିଶେଷ୍ୟ ପାଞ୍ଚ ପ୍ରକାର

ବସ୍ତୁବାଚକ ବିଶେଷ୍ୟ, ବ୍ୟକ୍ତିବାଚକ ବିଶେଷ୍ୟ, ଜାତିବାଚକ ବିଶେଷ୍ୟ, ଗୁଣବାଚକ ବିଶେଷ୍ୟ ଓ କ୍ରିୟାବାଚକ ବିଶେଷ୍ୟ ।

ବସ୍ତୁର ନାମକୁ ବସ୍ତୁବାଚକ ବିଶେଷ୍ୟ ବୋଲନ୍ତି ।

ବ୍ୟକ୍ତିର ନାମ ଅର୍ଥାତ୍ ମନୁଷ୍ୟ, ଅନ୍ୟ ପ୍ରାଣୀ, ଉଦ୍ଭିଦ, ନଦୀ, ପର୍ବତ, ନଗର ପ୍ରଭୃତି ମଧ୍ୟରେ ଜଣ ଜଣକର ବା ଗୋଟି ଗୋଟିକର ନାମକୁ ବ୍ୟକ୍ତିବାଚକ ବିଶେଷ୍ୟ କହନ୍ତି ।

ଜାତିର ନାମକୁ ଜାତିବାଚକ ବିଶେଷ୍ୟ କହନ୍ତି ।

ଗୁଣର ନାମକୁ ଗୁଣବାଚକ ବିଶେଷ୍ୟ କହନ୍ତି ।

କ୍ରିୟା ବା କାର୍ଯ୍ୟର ନାମକୁ କ୍ରିୟାବାଚକ ବିଶେଷ୍ୟ କହନ୍ତି ।

ଅନୁଶୀଳନୀ—(ଅ) ନିମ୍ନଲିଖିତ ବିଶେଷ୍ୟମାନଙ୍କ ମଧ୍ୟରେ କେଉଁଟି କି ପ୍ରକାର ବିଶେଷ୍ୟ ବୋଲ:—

ଚିଲିକା, କୁକୁର, କାବେରୀ, ପଥର, ଲୁଗା, କାଠ, ଭୁବନେଶ୍ୱର, ହାତୀ, ଫୁଲ, କୁଅ, ଅଗ୍ରଗମନ, ଶୌର୍ଯ୍ୟ, କଦଳୀ ।

(ଆ) ନିମ୍ନଲିଖିତ ବାକ୍ୟଗୁଡ଼ିକରେ ବିଶେଷ୍ୟ ପଦ ବାଛି ଦେଇ କେଉଁଟି କି ପ୍ରକାର ବିଶେଷ୍ୟ ବୋଲ:—

(୧) ସୁନାରେ ଅଳଙ୍କାର ଗଢ଼ାହୁଏ ।

(୨) ମଥୁରାକୁ ଯିବ କି ମୁଁ ଧାଇଁ ?

(୩) କୁଟୁଣିକୁ ଧାନ ଦିଅ ।

(୪) ନୃପତ୍ୱ ଠାରୁ ବିଦ୍ୱତ୍ୱ ଉଣା ନୁହେ ।

(୫) ଠିଆ ହୋଇ ପିଇବା ଭଲ ନୁହେ ।

(୬) ଚୈତ୍ୟ କଦଳୀ ଅଖାରେ ଭଅ, ପୋତ ନପୋତ ହୁଅଇ ଠିଅ ।

(୭) କହିବା ଠାରୁ କରିବା କଷ୍ଟ ।

(୮) ନାଗଙ୍କି ମାର ନାହିଁ ।

## ଲିଙ୍ଗ

ଯେଉଁ ପଦଟି ପୁରୁଷକୁ ବୁଝାଏ ତାହା **ପୁଂଲିଙ୍ଗ** । ଯଥା—ରାମ, ରଘୁ, ଗୋପାଳ, ଷଣ୍ଢ, ଘୋଡ଼ା, ହାତୀ, ମେଣ୍ଢା ପ୍ରଭୃତି ।

ଯେଉଁ ପଦଟି ସ୍ତ୍ରୀକି ବୁଝାଏ ତାହା **ସ୍ତ୍ରୀଲିଙ୍ଗ** । ଯଥା—ସୀତା, ଗାଈ, ଘୋଡ଼ୀ, ହାତୁଣୀ, ମେଣ୍ଢୀ ପ୍ରଭୃତି ।

ଯେଉଁ ପଦଟି ପୁରୁଷ ଓ ସ୍ତ୍ରୀକି ଛାଡ଼ି ଅନ୍ୟକୁ ବୁଝାଏ, ତାହାକୁ **କ୍ଳୀବଲିଙ୍ଗ** କହନ୍ତି । ଯଥା—ବସ୍ତ୍ର, ବଣ, ଲୁଣ, ସୁନା, କାଠ, ତେଲ, ଫୁଲ ପ୍ରଭୃତି ।

ଲତା, ବୁଦ୍ଧି, ଲଜ୍ଜା, ଶ୍ରେଣୀ, ଶୋଭା ପ୍ରଭୃତି କେତେ ଗୁଡ଼ିଏ ବିଶେଷ୍ୟ ପଦକୁ **ସ୍ୱାଭାବିକ ସ୍ତ୍ରୀଲିଙ୍ଗ** କହନ୍ତି ।

ଅନୁଶୀଳନୀ:—ନିମ୍ନଲିଖିତ ବାକ୍ୟ ଗୁଡ଼ିକରେ କେଉଁଟି ପୁଂଲିଙ୍ଗ କେଉଁଟି ସ୍ତ୍ରୀଲିଙ୍ଗ, କେଉଁଟି କ୍ଳୀବଲିଙ୍ଗ ଦେଖାଇ ଦିଅ:—

(୧) ରାମ ଓ ରାବଣର ଯୁଦ୍ଧ ହେଲା ।

(୨) ତେଲୁଣୀ ତେଲ ବିକୁଥିଲା ।

(୩) ପାଣୁଣୀ ପଢା ଓ ଶିକା ବିକୁଛି ।

(୪) କେଉଟ ଖଇ ବିକେ ନାହିଁ ।

(୫) ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବେଦ ପଢ଼ନ୍ତି ।

(୬) ମହାନଦୀ ଉତ୍କଳରେ ବଡ଼ ।

## ବଚନ

ବିଶେଷ୍ୟ ପଦର ଦୁଇଟି ବଚନ ଅଛି—ଏକବଚନ ଓ ବହୁବଚନ। ଯେଉଁ ବିଶେଷ୍ୟ ପଦରେ ସଂଖ୍ୟା ଏକ ବୋଲି ଜଣାଯାଏ, ତାହାର **ଏକବଚନ** ଏବଂ ଯହିଁରେ ସଂଖ୍ୟା ଏକରୁ ଅଧିକ ଅର୍ଥାତ୍ ବହୁତ ବୋଲି ଜଣାଯାଏ, ତାହାର **ବହୁବଚନ** ହୁଏ।

'ପିଲା ଦୌଡ଼ୁଅଛି'—ଏଠାରେ 'ପିଲା' ଏହି ବିଶେଷ୍ୟ ପଦର ଏକବଚନ। 'ପିଲାମାନେ ଦୌଡ଼ୁଅଛନ୍ତି'—ଏଠାରେ 'ପିଲାମାନେ' ଏହି ବିଶେଷ୍ୟ ପଦର ବହୁବଚନ।

'ପଣସଟି' କହିଲେ ଗୋଟିଏ ପଣସ ବୁଝିବାକୁ ହେବ। 'ପଣସ ଗୁଡ଼ିଏ' କହିଲେ ଏକରୁ ଅଧିକ ପଣସ ବୁଝିବାକୁ ହେବ। 'ପଣସଟି' ଏକବଚନ, 'ପଣସ ଗୁଡ଼ିଏ' ବହୁବଚନ। ମନୁଷ୍ୟ, ଘୋଡ଼ା, ମେଣ୍ଢା—ଏହି ବିଶେଷ୍ୟ ପଦଗୁଡ଼ିକର ଏକବଚନ। ମନୁଷ୍ୟମାନେ, ଘୋଡ଼ାଗୁଡ଼ିଏ, ମେଣ୍ଢାଗୁଡ଼ାକ—ଏହି ବିଶେଷ୍ୟ ପଦଗୁଡ଼ିକର ବହୁବଚନ।

ଅନୁଶୀଳନୀ:—ନିମ୍ନଲିଖିତ ବାକ୍ୟଗୁଡ଼ିକର ବଚନ ଦେଖାଅ—

| | |
|---|---|
| (୧) କୁକୁର ଭୁକୁଅଛି। | (୪) ମୂଷାଗୁଡ଼ାକ ଖୋଳୁଅଛନ୍ତି। |
| (୨) କୁକୁରମାନେ ଭୁକୁଅଛନ୍ତି। | (୫) ତାଳ ଝଡ଼ୁଅଛି। |
| (୩) ମୂଷା ଖୋଳୁଅଛି। | (୬) ତାଳଗୁଡ଼ାକ ଝଡ଼ୁଅଛି। |

---

## ବିଭକ୍ତି

ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ ଓ ସପ୍ତମୀ—ଏହି ସାତଟି **ବିଭକ୍ତି** ଅଛି। ପ୍ରତ୍ୟେକ ବିଭକ୍ତିରେ ଏକବଚନ ଓ ବହୁବଚନ ଅଛି।

ବିଭକ୍ତିଗୁଡ଼ିକର ଅକ୍ଷୁଢ ତଳେ ଦେଖାଇ ଦିଆଗଲା:—

| ବିଭକ୍ତି | ଏକବଚନ | ବହୁବଚନ |
| --- | --- | --- |
| ପ୍ରଥମା— | | ଏ, ମାନ, ମାନେ, ଗୁଡ଼ିକ, ଗୁଡ଼ାକ, ଗୁଡ଼ିଏ, ଗୁଡ଼ାଏ । |
| ଦ୍ୱିତୀୟା— | କୁ, ଙ୍କୁ । | ଙ୍କୁ, ମାନଙ୍କୁ । |
| ତୃତୀୟା— | ଦ୍ୱାରା, ଦେଇ, ରେ କର୍ତ୍ତୃକ । | ମାନଙ୍କଦ୍ୱାରା, ମାନଙ୍କଦେଇ, ମାନଙ୍କରେ, ମାନଙ୍କକର୍ତ୍ତୃକ । |
| ଚତୁର୍ଥୀ— | କୁ, ଙ୍କୁ, ପାଇଁ, ନିମନ୍ତେ, ନିମିତ୍ତ, ସକାଶେ । | ଙ୍କୁ, ମାନଙ୍କୁ, ମାନଙ୍କପାଇଁ, ମାନଙ୍କନିମନ୍ତେ, ମାନଙ୍କ-ନିମିତ୍ତ, ମାନଙ୍କସକାଶେ । |
| ପଞ୍ଚମୀ— | ରୁ, ଠାରୁ, ତ୍ । | ମାନଙ୍କରୁ, ମାନଙ୍କଠାରୁ । |
| ଷଷ୍ଠୀ— | ର, ଙ୍କ, ଙ୍କର । | ମାନଙ୍କ, ମାନଙ୍କର । |
| ସପ୍ତମୀ— | ରେ, ଠାରେ, ଏ । | ମାନଙ୍କରେ, ମାନଙ୍କଠାରେ । |

ଗୌରବ ବା ମର୍ଯ୍ୟାଦା ବୁଝାଇଲେ ଏକବଚନ ସ୍ଥଳରେ ବହୁବଚନର ମଧ୍ୟ ବ୍ୟବହାର କରାଯାଏ । 'ମହାପାତ୍ରେ କହିଲେ' ଏଠାରେ 'ମହାପାତ୍ରେ' ପଦର ପ୍ରଥମା ବିଭକ୍ତିର ବହୁବଚନ । 'ଗୋପୀନାଥେ ଫଗୁ ଖେଳୁଛନ୍ତି' 'ପଣ୍ଡିତେ ପଢ଼ାଉଛନ୍ତି' ଏ ସ୍ଥଳରେ 'ମହାପାତ୍ରେ' 'ଗୋପୀନାଥେ' 'ପଣ୍ଡିତେ' ଏ ପଦଗୁଡ଼ିକର ପ୍ରଥମା **ବହୁବଚନ** ରୂପ ବୁଝିବାକୁ ହେବ ।

ଟି, ଟିଏ, ଟା, ଟାଏ—ଏହି ବିଭକ୍ତିଗୁଡ଼ିକର ଏକବଚନରେ କୌଣସି କୌଣସି ସ୍ଥଳରେ ବ୍ୟବହାର କରାଯାଏ:—ଫୁଲଟି, ପିଲାଟିଏ, ଘୁଷୁରିଟା, ଛେଳିଟାଏ—ଏ ଗୁଡ଼ିକ ଏକବଚନ ।

ଭିନ୍ନ ଭିନ୍ନ ବିଭକ୍ତିରେ 'ମନୁଷ୍ୟ' ଶବ୍ଦର ରୂପ ତଳେ ଦେଖାଇ ଦିଆଗଲା:—

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା— | ମନୁଷ୍ୟ | ମନୁଷ୍ୟମାନେ । |
| ଦ୍ୱିତୀୟା— | ମନୁଷ୍ୟକୁ | ମନୁଷ୍ୟମାନଙ୍କୁ । |
| ତୃତୀୟା— | ମନୁଷ୍ୟଦ୍ୱାରା | ମନୁଷ୍ୟମାନଙ୍କ ଦ୍ୱାରା । |
| ଚତୁର୍ଥୀ— | ମନୁଷ୍ୟପାଇଁ | ମନୁଷ୍ୟମାନଙ୍କ ପାଇଁ । |
| ପଞ୍ଚମୀ— | ମନୁଷ୍ୟଠାରୁ | ମନୁଷ୍ୟମାନଙ୍କ ଠାରୁ । |
| ଷଷ୍ଠୀ— | ମନୁଷ୍ୟର | ମନୁଷ୍ୟମାନଙ୍କର । |
| ସପ୍ତମୀ— | ମନୁଷ୍ୟଠାରେ | ମନୁଷ୍ୟମାନଙ୍କଠାରେ । |

ଅନୁଶୀଳନୀ:—ନିମ୍ନଲିଖିତ ବାକ୍ୟ ଗୁଡ଼ିକରେ ବିଶେଷ୍ୟର କେଉଁ ବିଭକ୍ତି ଓ କେଉଁ ବଚନ କୋଳ:—

(୧) ପଣ୍ଡିତମାନେ ସଭାରେ ବସି ଅଛନ୍ତି ।

(୨) ପିଲାମାନେ ଶ୍ରଦ୍ଧାରେ ଚନ୍ଦ୍ରଙ୍କୁ ଦେଖନ୍ତି ।

(୩) ରାଜା ପୁରୋହିତଙ୍କୁ ଗାଈ ଦେଲେ ।

(୪) କୃଷ୍ଣର ଚମ୍ପାଗଛରୁ ଫୁଲଟିଏ ଝଡ଼ିଲା ।

## କାରକ

'ଶିବ ଆସୁଅଛି'—ଏଠାରେ 'ଶିବ' ଆସିବା କାର୍ଯ୍ୟ କରୁଅଛି । ଏଣୁ ଏ ବାକ୍ୟରେ 'ଶିବ' କର୍ତ୍ତୃପଦ । 'ହାତୀ ଝୁଲୁଅଛି'—ଏହି ବାକ୍ୟରେ 'ହାତୀ' ଝୁଲିବା କାର୍ଯ୍ୟ କରୁଅଛି ବୋଲି 'ହାତୀ' କର୍ତ୍ତାକାରକ । 'ଗୁରୁ ବାହାରିଗଲେ'—ଏହି ବାକ୍ୟରେ 'ଗୁରୁ' ବାହାରିଯିବା କାର୍ଯ୍ୟ କରିଥିଲେ ବୋଲି ଗୁରୁ କର୍ତ୍ତୃପଦ ।

ଯେ କୌଣସି କାର୍ଯ୍ୟ କରେ ତାହାକୁ **କର୍ତ୍ତା** କହନ୍ତି ।

'ଜୟନ୍ତ ଭାତ ଖାଉଛି'—ଏଠାରେ ଭାତ କର୍ମକାରକ । 'ସଦାନନ୍ଦ ଦୁଧ ପିଉଅଛି'—ଏଠାରେ 'ଦୁଧ' କର୍ମକାରକ । 'ନକ୍ଷତ୍ରମଣି ପରବା କାଟୁଅଛି'—ଏଠାରେ 'ପରବା' କର୍ମକାରକ । 'ନିତ୍ୟାନନ୍ଦ ମାଙ୍କଡ଼ ଦେଖୁଅଛି'—ଏଠାରେ 'ମାଙ୍କଡ଼' କର୍ମକାରକ ।

ଯାହାକୁ ଖାଅନ୍ତି, ପିଅନ୍ତି, ଦେଖନ୍ତି ବା ଏହିପରି ଆଉ କିଛି କରନ୍ତି ବୋଲି ବାକ୍ୟରୁ ଜଣାଯାଏ ତାହାକୁ **କର୍ମକାରକ** କହନ୍ତି ।

'ଲକ୍ଷ୍ମଣ ଲେଖନରେ ଲେଖିଲା'—ଏଠାରେ ଲେଖିବା କାର୍ଯ୍ୟ ଲେଖନ ଯୋଗେ ହେଲା ବୋଲି ଜଣା ଯାଉଅଛି । 'ଲୋକେ ନାଆରେ ନଈ ପାରିହେଲେ'—ଏଠାରେ 'ନଈ ପାରିହେବା' କାର୍ଯ୍ୟ ନାଆ ଯୋଗେ ହେଲା ବୋଲି ଜଣା ଯାଉଅଛି । 'ଚଷାମାନେ ଦାଆଦ୍ୱାରା ଧାନ କାଟନ୍ତି'—ଏଠାରେ 'ଧାନ କାଟିବା' କାର୍ଯ୍ୟ ଦାଆଦ୍ୱାରା ହୁଏ ବୋଲି ଜଣା ଯାଉଛି ।

ଲେଖନରେ, ନାଆରେ, ଦାଆଦ୍ୱାରା—ଏ ଗୁଡ଼ିକ କରଣ କାରକ । କର୍ତ୍ତା ଯାହାଦ୍ୱାରା କାର୍ଯ୍ୟ ସାଧନ କରେ ବୋଲି ବାକ୍ୟରୁ ଜଣାଯାଏ ତାହାକୁ **କରଣ କାରକ** କହନ୍ତି ।

ଦାମସୁନ୍ଦୁ ଦାନ ଦିଅ, ଭିଖାରିକି ଭିକ ଦିଅ, ବୈଦ୍ୟ ରୋଗୀପାଇଁ ଔଷଧ ଦେଲେ—ଏହି ବାକ୍ୟଗୁଡ଼ିକରେ 'ଦାମସୁନ୍ଦୁ', 'ଭିଖାରିକି' ଓ 'ରୋଗୀପାଇଁ' କିଛି ଦିଆଯିବାର ଜଣା ଯାଉଅଛି । 'ଦାମସୁନ୍ଦୁ', 'ଭିଖାରିକି', 'ରୋଗୀପାଇଁ' ସମ୍ପ୍ରଦାନ କାରକ ।

ଯାହାକୁ କୌଣସି ବସ୍ତୁ ଦିଆଯିବା ବାକ୍ୟରୁ ଜଣାଯାଏ ତାହାକୁ **ସମ୍ପ୍ରଦାନ କାରକ** କହନ୍ତି ।

'ଗଛରୁ ଫୁଲ ଝଡ଼ିଲା'—ଏଠାରେ 'ଝଡ଼ିଲା' କାର୍ଯ୍ୟ 'ଗଛଠାରୁ' ହେଲା ବୋଲି ଜଣା ଯାଉଅଛି । 'ଦୁଧରୁ ଦହି ହୁଏ'—ଏଠାରେ ହେବା କାର୍ଯ୍ୟ 'ଦୁଧରୁ' ବୋଲି ଜଣା ଯାଉଅଛି । 'ଗାତରୁ ସାପ ବାହାରୁଛି'—ଏଠାରେ ବାହାରିବା କାର୍ଯ୍ୟ 'ଗାତରୁ' ହୁଏ ବୋଲି ଜଣା ଯାଉଅଛି ।

ଗଛରୁ, ଦୁଧରୁ, ଗାତରୁ—ଏ ଗୁଡ଼ିକ ଅପାଦାନ କାରକ । ଯାହା ଠାରୁ କୌଣସି କାର୍ଯ୍ୟ ହେବା, ବାକ୍ୟରୁ ଜଣାଯାଏ; ତାହାକୁ **ଅପାଦାନ କାରକ** କହନ୍ତି ।

ତେଲ, ଦୁଧ, ପାଣି ପ୍ରଭୃତି, ମଠିଆ, ଘଡ଼ି, ଗରା ପ୍ରଭୃତିରେ ରଖାଯାଏ; ଏଣୁ ମାଠିଆ ପ୍ରଭୃତିକୁ ପାତ୍ର ବା ଆଧାର କହନ୍ତି । 'ଗରାରେ ପାଣି ଅଛି'—ଏଠାରେ 'ଅଛି' କ୍ରିୟାର ଆଧାର 'ଗରା' । 'ଶ୍ରୀଭନା ପଲଙ୍କରେ ଶୋଇଅଛନ୍ତି'—ଏଠାରେ 'ଶୋଇଅଛନ୍ତି' କ୍ରିୟାର ଆଧାର 'ପଲଙ୍କ' । 'ତିଳରେ ତେଲ ଥାଏ'—ଏଠାରେ 'ଥାଏ' କ୍ରିୟାର ଆଧାର 'ତିଳ' ।

ଗରାରେ, ପଲଙ୍କରେ, ତିଳରେ—ଏ ଗୁଡ଼ିକ **ଅଧିକରଣ କାରକ** । 'ଆଜି ସକାଳେ ରାଜା ବଜେ ହେଲେ'—ଏଠାରେ ବଡଜହେବା ଘଟନାର ସମୟ 'ସକାଳ' । 'ରାତିରେ ଚନ୍ଦ୍ର ଉଏଁ'—ଏଠାରେ ଉଇଁବା ଘଟନାର ସମୟ 'ରାତି' । 'ଗ୍ରୀଷ୍ମକାଳରେ ପଣସ ପାଚେ'—ଏଠାରେ ପାଚିବା ଘଟନାର ସମୟ 'ଗ୍ରୀଷ୍ମକାଳ' । ସକାଳେ, ରାତିରେ ଗ୍ରୀଷ୍ମକାଳରେ—ଏ ଗୁଡ଼ିକ **ଅଧିକରଣ କାରକ** ।

କ୍ରିୟାର ଆଧାରକୁ ଏବଂ ଘଟନାର ସମୟକୁ **ଅଧିକରଣ କାରକ** କହନ୍ତି ।

କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ, ଅଧିକରଣ—ଏହି **ଛଅଟି କାରକ** ବିଶେଷ୍ୟ ପଦର ଅଛି ।

କର୍ତ୍ତା କାରକରେ ପ୍ରଥମା ବିଭକ୍ତି, କର୍ମ କାରକରେ ଦ୍ୱିତୀୟା ବିଭକ୍ତି, କରଣ କାରକରେ ତୃତୀୟା ବିଭକ୍ତି, ସମ୍ପ୍ରଦାନ କାରକରେ ଚତୁର୍ଥୀ ବିଭକ୍ତି, ଅପାଦାନ କାରକରେ ପଞ୍ଚମୀ ବିଭକ୍ତି ଏବଂ ଅଧିକରଣ କାରକରେ ସପ୍ତମୀ ବିଭକ୍ତି ହୁଏ ।

**ସମ୍ବନ୍ଧ** ପଦରେ ଷଷ୍ଠୀ ବିଭକ୍ତି ଏବଂ **ସମ୍ବୋଧନରେ** ପ୍ରଥମା ବିଭକ୍ତି ପର ହୁଏ ।

ଭିନ୍ନ ଭିନ୍ନ କାରକରେ 'ଛାତ୍ର' ଓ 'ଘର' ଶବ୍ଦର ରୂପ ତଳେ ଦେଖାଇ ଦିଆଗଲା:—

## (୧) ଛାତ୍ର

| କାରକ | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଛାତ୍ର | ଛାତ୍ରମାନେ |
| କର୍ମ | ଛାତ୍ରକୁ | ଛାତ୍ରମାନଙ୍କୁ |
| କରଣ | ଛାତ୍ରଦ୍ୱାରା | ଛାତ୍ରମାନଙ୍କଦ୍ୱାରା |
| ସମ୍ପ୍ରଦାନ | ଛାତ୍ରପାଇଁ, ଛାତ୍ରକୁ | ଛାତ୍ରମାନଙ୍କପାଇଁ<br>ଛାତ୍ରମାନଙ୍କୁ |
| ଅପାଦାନ | ଛାତ୍ରଠାରୁ | ଛାତ୍ରମାନଙ୍କଠାରୁ |
| ଅଧିକରଣ | ଛାତ୍ରଠାରେ | ଛାତ୍ରମାନଙ୍କଠାରେ |
| ସମ୍ବନ୍ଧ ପଦ | ଛାତ୍ରର | ଛାତ୍ରମାନଙ୍କର |
| ସମ୍ବୋଧନ | ହେ ଛାତ୍ର | ହେ ଛାତ୍ରମାନେ |

## (୨) ଘର

| | | |
|---|---|---|
| କର୍ତ୍ତା | ଘର | ଘରଗୁଡ଼ିକ |
| କର୍ମ | ଘରକୁ | ଘରଗୁଡ଼ିକୁ |

| କାରକ | ଏକ ବଚନ | ବହୁ ବଚନ |
| --- | --- | --- |
| କରଣ | ଘର ଦେଇ | ଘରଗୁଡ଼ିକ ଦେଇ |
| ସମ୍ପ୍ରଦାନ | ଘରପାଇଁ, ଘରକୁ | ଘରଗୁଡ଼ିକ ପାଇଁ |
| ଅପାଦାନ | ଘରୁ | ଘରଗୁଡ଼ିକରୁ |
| ଅଧିକରଣ | ଘରେ | ଘରଗୁଡ଼ିକରେ |
| ସମ୍ବନ୍ଧ | ଘରର | ଘରଗୁଡ଼ିକର |
| ସମ୍ବୋଧନ | ହେ ଘର | ହେ ଘରଗୁଡ଼ିକ |

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟ ଗୁଡ଼ିକରେ କେଉଁ ବିଶେଷ୍ୟ ପଦର କି କାରକ ଓ ତହିଁରେ କେଉଁ ବିଭକ୍ତି ଅଛି ବୋଲ:—

(୧) ନୀଳାଚଳରେ ଜଗନ୍ନାଥଙ୍କ ଦେଉଳ ଅଛି ।
(୨) ମହେନ୍ଦ୍ରରୁ ମହେନ୍ଦ୍ରତନୟା ବାହାରି ସମୁଦ୍ରରେ ମିଶିଅଛି ।
(୩) ଭୀମ ଗଦାଦ୍ୱାରା ଦୁର୍ଯ୍ୟୋଧନର ଉରୁ ଭାଙ୍ଗିଥିଲେ ।
(୪) ଦେବତାଙ୍କୁ ଫୁଲ ଦେଲେ ପୁଣ୍ୟ ହୁଏ ।
(୫) ସଦାଗ୍ରହରୁ ଧର୍ମ ବଢ଼େ ।

## ସର୍ବନାମ

'ହରି ଶାନ୍ତ ପିଲା । ହରି କାହାରି ସଙ୍ଗରେ କଳି କରେ ନାହିଁ; କିମ୍ବା ନକହି କାହାରି ପଦାର୍ଥ ନିଏନାହିଁ । ହରିକୁ ସମସ୍ତେ ଭଲ ପାଆନ୍ତି ।' ଏହି ବାକ୍ୟଗୁଡ଼ିକରେ 'ହରି' ପଦ ବାରମ୍ବାର ରହିବାରୁ ଶୁଣିବାକୁ ଭଲ ଲାଗୁନାହିଁ । ସେପରି ନକହି 'ହରି ଶାନ୍ତପିଲା । ସେ କାହାରି ସଙ୍ଗରେ କଳି କରେ ନାହିଁ, କିମ୍ବା ନ କହି କାହାରି ପଦାର୍ଥ ନିଏ ନାହିଁ । ତାହାକୁ ସମସ୍ତେ ଭଲ ପାଆନ୍ତି ।' ଏପରି କହିଲେ ଶୁଣିବାକୁ

ଭଲ ଲାଗେ । କେବଳ ପ୍ରଥମ ବାକ୍ୟରେ 'ହରି' ପଦ ରଖି ପରବର୍ତ୍ତୀ ବାକ୍ୟ ଗୁଡ଼ିକରୁ 'ହରି' ଓ 'ହରିକୁ ଉଠାଇ ଦେଇ 'ସେ' ଓ 'ତାହାକୁ' ବ୍ୟବହାର କରାଗଲା ।

(୧) ଦୁଷ୍ଟଙ୍କର ଦଳନ ନିମନ୍ତେ ପାଣ୍ଡବମାନେ ଜନ୍ମ ହୋଇଥିଲେ (୨) **ସେମାନେ** ନାନା ସ୍ଥାନ ବୁଲି ଦୁଷ୍ଟମାନଙ୍କୁ ବିନାଶ କରୁଥିଲେ । (୩) ଏହିପରି ଛଦ୍ମ ବେଶରେ **ସେମାନଙ୍କର** ବହୁ ସମୟ ଅତିବାହିତ ହୋଇଥିଲା ।

ଉକ୍ତ ବାକ୍ୟ ଗୁଡ଼ିକରେ 'ସେମାନେ' ପାଣ୍ଡବମାନଙ୍କ ସ୍ଥାନରେ ଏବଂ 'ସେମାନଙ୍କ' ପାଣ୍ଡବମାନଙ୍କର ସ୍ଥାନରେ ବ୍ୟବହୃତ ହୋଇଅଛି । ବିଶେଷ୍ୟ ପଦର ସ୍ଥାନରେ ଏହିପରି ବ୍ୟବହୃତ ହେବା ପଦକୁ ସର୍ବନାମ କହନ୍ତି ।

ବାକ୍ୟରେ ବିଶେଷ୍ୟ ପଦର ବଦଳରେ ଯେଉଁ ପଦ ବ୍ୟବହାର କରାଯାଏ, ତାହାକୁ **ସର୍ବନାମ** କହନ୍ତି । ସର୍ବନାମ ପଦର ଲିଙ୍ଗ, ବଚନ, ପୁରୁଷ ଓ କାରକ ଅଛି । ସର୍ବନାମ ପଦ ଯେଉଁ ବିଶେଷ୍ୟ ପଦ ବଦଳରେ ବସେ, ତାହାର ଯେଉଁ ଲିଙ୍ଗ, ଯେଉଁ ବଚନ, ସର୍ବନାମ ପଦର ସେହି ଲିଙ୍ଗ ଓ ସେହି ବଚନ ହୁଏ ।

*ସର୍ବନାମମାନଙ୍କ ମଧ୍ୟରେ 'ସେ' ଅନ୍ୟ ପୁରୁଷ (ବା ପ୍ରଥମ ପୁରୁଷ), 'ତୁ' ମଧ୍ୟମ ପୁରୁଷ 'ମୁଁ' ଉତ୍ତମ ପୁରୁଷ । ଅର୍ଥାତ୍ ତୁ ଓ ମୁଁ ଛଡ଼ା ଯେତେ ଶବ୍ଦ ଅଛି ସେ ଗୁଡ଼ିକ ଅନ୍ୟ ପୁରୁଷ (ବା ପ୍ରଥମ ପୁରୁଷ)

---

* ଅମ୍ଭେ (୧ମ ପୁରୁଷ) ତୁମ୍ଭେ (୨ୟ ପୁରୁଷ) ସେ (୩ୟ ପୁରୁଷ) ଏହା ପୁରାଣ ପ୍ରସିଦ୍ଧ ଆର୍ଯ୍ୟ ଓଡ଼ିଆ ଭାଷାର ପ୍ରକୃତ ବିଧାନ ନୁହେ । ପ୍ରମାଣପାଇଁ ତା ୨୦।୮।୧୮୪୫ ରେ ପ୍ରକାଶିତ 'ଓଡ଼ିଆ ବ୍ୟାକରଣ ସାର' ଓ ୧୫।୭।୧୮୭୨ରେ ପ୍ରକାଶିତ ପୁଣ୍ୟ ଶ୍ଲୋକର ପ୍ରଧାନ କର୍ମଗୁରୁଙ୍କ 'ଓଡ଼ିଆ ବ୍ୟାକରଣ ମଞ୍ଜରୀ' ଦେଖନ୍ତୁ ।

ଭିନ୍ନ ଭିନ୍ନ ବିଭକ୍ତିରେ ବିଶେଷ୍ୟରେ ଯେପରି ରୂପ ହୁଏ ସର୍ବନାମର ମଧ୍ୟ ସେହିପରି ରୂପ ହୁଏ । ନିମ୍ନରେ ତୃତୀୟ ସର୍ବନାମର ରୂପ ଦେଖାଇ ଦିଆଗଲା:—

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା— | ସେ, ତାହା | ସେମାନେ |
| ଦ୍ୱିତୀୟା— | ତାକୁ, ତାଙ୍କୁ, ତାହାକୁ | ସେମାନଙ୍କୁ |
| ତୃତୀୟା— | ତାଦ୍ୱାରା, ତାହାଦ୍ୱାରା ତାଙ୍କଦ୍ୱାରା, ତାହାଙ୍କ ଦ୍ୱାରା | ସେମାନଙ୍କ ଦ୍ୱାରା |
| ଚତୁର୍ଥୀ— | ତାପାଇଁ, ତାହାକୁ | ସେମାନଙ୍କପାଇଁ ସେମାନଙ୍କୁ |
| ପଞ୍ଚମୀ— | ତାଠାରୁ, ତାହାଠାରୁ ତାଙ୍କଠାରୁ | ସେମାନଙ୍କଠାରୁ |
| ଷଷ୍ଠୀ— | ତାର, ତାହାର, ତାଙ୍କର ତାହାଙ୍କର | ସେମାନଙ୍କର |
| ସପ୍ତମୀ— | ତାଠାରେ, ତାହାଠାରେ ତାଙ୍କଠାରେ, ତାହାଙ୍କଠାରେ | ସେମାନଙ୍କଠାରେ |

ସମ୍ବୋଧନରେ ରୂପ ନାହିଁ ।

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା— | ମୁଁ * | ଆମ୍ଭେମାନେ |
| ଦ୍ୱିତୀୟା— | ମୋତେ, ଆମ୍ଭଙ୍କୁ | ଆମ୍ଭମାନଙ୍କୁ |
| ତୃତୀୟା— | ମୋଦ୍ୱାରା, ଆମ୍ଭଦ୍ୱାରା | ଆମ୍ଭମାନଙ୍କଦ୍ୱାରା । |

*'ଆମ୍ଭେ ଏବଂ ତୁମ୍ଭେ' ପ୍ରକୃତ ପକ୍ଷରେ 'ମୁଁ' ଓ 'ତୁ'ର ବହୁବଚନ । ମାନ୍ୟାର୍ଥରେ ଲୋକେ ଏକବଚନ ସ୍ଥଳେ ବହୁବଚନ ପ୍ରୟୋଗ କରିବାରୁ ଏହି ସର୍ବନାମ ଯୋଡ଼ିକ ଏକ ବଚନରେ ପ୍ରୟୋଗ ହେଉଅଛି ।

ରାଧାନାଥ ରାୟ ।

| | | |
|---|---|---|
| ଚତୁର୍ଥୀ— | ମୋପାଇଁ, ମୋତେ | ଆମ୍ଭମାନଙ୍କୁ, ଆମ୍ଭମାନଙ୍କପାଇଁ |
| ପଞ୍ଚମୀ— | ମୋଠାରୁ, ଆମ୍ଭଠାରୁ | ଆମ୍ଭମାନଙ୍କଠାରୁ |
| ଷଷ୍ଠୀ— | ମୋର, ଆମ୍ଭର | ଆମ୍ଭମାନଙ୍କର |
| ସପ୍ତମୀ— | ମୋଠାରେ, ଆମ୍ଭଠାରେ | ଆମ୍ଭମାନଙ୍କଠାରେ |

ସମ୍ବୋଧନରେ ରୂପ ନାହିଁ ।

| ପ୍ରାକୃତ | ସଂସ୍କୃତ | ଓଡ଼ିଆ |
|---|---|---|
| | ତଦ୍ | ସେ, ତାହା |
| ତୁମ୍ହେ | ତ୍ୱଂ | ତୁ, ତୁମ୍ଭେ |
| ଅହ୍ମେ | ଅହଂ | ମୁଁ, ଆମ୍ଭେ |
| | ଯଦ୍ | ଯେ, ଯାହା |
| | ଏତଦ୍ | ଏ, ଏହା |
| | କିମ୍ | କଏ, କଅଣ |
| | ସର୍ବ | ସର୍ବ, ସବୁ |
| | ଅନ୍ୟ | ଅନ୍ୟ, ଆଉ, ଆନ |

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟଗୁଡ଼ିକରେ ସର୍ବନାମ ପଦ ଚିହ୍ନାଇ ଦିଅ ଏବଂ ତାହା କେଉଁ ବିଶେଷ୍ୟ ପଦ ବଦଳରେ ବସିଅଛି ଓ ତହିଁରେ କେଉଁ ବିଭକ୍ତି ଅଛି କହ:—

(୧) ମହୁମାଛି ଫୁଲରୁ ମହୁ ସଞ୍ଚୟ କରେ, ତାହାକୁ ଲୋକେ ନେଇ ପୁଣ୍ୟ କାର୍ଯ୍ୟରେ ଲଗାନ୍ତି ।

(୨) ଦେବି ବୀଣାପାଣି ! କେଉଁ ପାପ ଫଳେ
କରୁଣା ତୋହର ଊଣା ଏ ଜନ୍ମଲେ !

(୩) ହର ଓ ହର ମଧ୍ୟରେ କଏ ବଡ଼ କହିବା ସହଜ ନୁହେଁ ।

(୪) ମଞ୍ଜୁଷାରେ ମହେନ୍ଦ୍ର ପର୍ବତ ଅଛି । ତାହାର ଶୃଙ୍ଗକୁ ସୁବିଧା ବାଟ ଅଛି ।

(ଖ) ନିମ୍ନଲିଖିତ ବାକ୍ୟଗୁଡ଼ିକରେ ବିଶେଷ୍ୟ ପଦ ପରିବର୍ତ୍ତିରେ ଯେଉଁଠାରେ ସର୍ବନାମ ବସିବା ଉଚିତ ସେଠାରେ ତାହା ବସାଅ:—

(୧) ଦମୟନ୍ତୀ ଭୀମ ରାଜାଙ୍କର କନ୍ୟା ଥିଲେ । ଦମୟନ୍ତୀ ନଳଙ୍କୁ ବିଭା ହେଲେ ।

(୨) ଚନ୍ଦ୍ରମୋହନ ମହାରଣା ଜଣେ ଓଡ଼ିଆ ବୈୟାକରଣ, ମହାରଣାଙ୍କ ବ୍ୟାକରଣ ଦେଖିଲେ ସଂସ୍କୃତ ଚର୍ଚ୍ଚାର ପରିଚୟ ମିଳେ ।

(୩) ଓଡ଼ିଆମାନେ ଆର୍ଯ୍ୟ ଏବଂ ଓଡ଼ିଆମାନେ ଧର୍ମଭୀରୁ ।

---

## କ୍ରିୟା

ଆସୁଅଛି, ଡେଉଁଅଛି, ବର୍ଷିଲା, ଦେଲା, ନେଲା—ଏ ଗୁଡ଼ିକ କ୍ରିୟା ପଦ । ଯେଉଁ ପଦ କୌଣସି କାର୍ଯ୍ୟ ବା କ୍ରିୟା ବୁଝାଏ ତାହାକୁ **କ୍ରିୟା** କହନ୍ତି ।

'ରଘୁ ଆସୁଅଛି'—ଏହି ବାକ୍ୟରେ 'ଆସୁଅଛି' ପଦ ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଉ ଅଛି । 'ଠେକୁଆ ଡେଉଁଅଛି'—ଏଠାରେ 'ଡେଉଁଅଛି' ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଉଅଛି । 'ମେଘ ବର୍ଷିଲା'—ଏଠାରେ 'ବର୍ଷିଲା' ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଉଅଛି ।

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟଗୁଡ଼ିକରେ କ୍ରିୟା ପଦ ବାଛିଦିଅ:—

(୧) ଫାଲ୍ଗୁନ ମାସରେ ଦୋଳଯାତ୍ରା ହୁଏ ।
(୨) ବର୍ଷାକାଳରେ ନଈ ବଢ଼େ ।
(୩) ଗ୍ରହଣବେଳେ ଚନ୍ଦ୍ର ଖଣ୍ଡିଅ ଦେଖାଯାଏ ।
(୪) ତୁଳସୀ ଦୁଇପତ୍ରରୁ ବାସେ ।
(୫) ଧୀର ପାଣୀ ପଥର କାଟେ ।

(ଗ) ନିମ୍ନଲିଖିତ କ୍ରିୟା ପଦଗୁଡ଼ିକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର—ହସିଲା, ଶୋଇବ, ଝଡ଼ୁଛି, ଶୁଖାଇଲା, ଦେବ ।

ଖାଇ, ପିଇ, ଶୋଇ, ହସି, ବସି, ନେଇକରି, ଦେଇକରି, ଦେଖିକରି—ଏ ଗୁଡ଼ିକ **ଅସମାପିକା କ୍ରିୟା** ।

'ଲୋକନାଥ ପିଠା ଖାଇ ଶୋଇଲା'—ଏହି ବାକ୍ୟରେ 'ଖାଇ' ଗୋଟିଏ କ୍ରିୟା ପଦ ଏବଂ 'ଶୋଇଲା' ଗୋଟିଏ କ୍ରିୟାପଦ । 'ଲୋକନାଥ ପିଠା ଖାଇ' ଏତିକି କହିଲେ ବାକ୍ୟ ଶେଷ ହେଉନାହିଁ । ଏଣୁ 'ଖାଇ' ଏହି କ୍ରିୟା ପଦକୁ ଅସମାପିକା କ୍ରିୟା ବୋଲାଯାଏ । 'ଲୋକନାଥ ପିଠା ଖାଇ ଶୋଇଲା'—ଏଠାରେ 'ଶୋଇଲା' ଏହି କ୍ରିୟା ପଦରେ ବାକ୍ୟ ସଂପୂର୍ଣ୍ଣ ହେଲା, ଏଣୁ 'ଶୋଇଲା' ସମାପିକା କ୍ରିୟା । 'ରାଣୀ ଧାଇଁ ଧାଇଁ ଝୁଣ୍ଟିଲା'—ଏଠାରେ 'ଧାଇଁ ଧାଇଁ' ଅସମାପିକା କ୍ରିୟା । 'ଝୁଣ୍ଟିଲା' ସମାପିକା କ୍ରିୟା । 'କୃଷ୍ଣ ନ ଗଲେ, ଶ୍ରୀକର ଯିବ'—ଏଠାରେ 'ଗଲେ' ଅସମାପିକା କ୍ରିୟା, 'ଯିବ' ସମାପିକା କ୍ରିୟା ।

ଯେଉଁ କ୍ରିୟାରେ ବାକ୍ୟ ସଂପୂର୍ଣ୍ଣ ହୁଏ, ତାହାକୁ **ସମାପିକା କ୍ରିୟା** କହନ୍ତି । ଯେଉଁ କ୍ରିୟାରେ ବାକ୍ୟ ସଂପୂର୍ଣ୍ଣ ହୁଏ ନାହିଁ, ତାହାକୁ **ଅସମାପିକା କ୍ରିୟା** କହନ୍ତି ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟଗୁଡ଼ିକରେ ସମାପିକା ଓ ଅସମାପିକା କ୍ରିୟା ଦେଖାଇ ଦିଅ:—

(୧) ଶତ୍ରୁପାଖ ହସି କହିଲା ।
(୨) ଅନନ୍ତ ଶୋଇ ଉଠିଲଣି ।
(୩) ସନ୍ଧ୍ୟା ହେଲେ ଦିନ ନ ଥିବ ।
(୪) ସିଦ୍ଧାନ୍ତଦର୍ପଣ ଥିଲେ ଚନ୍ଦ୍ରଶେଖରଙ୍କ ନାମ ଥିବ ।
(୫) ଗଛରୁ ପଡ଼ି ମଲା ।
(୬) ମାଈଁ ଗୁଣ କହିଲେ ସରିବ ନାହିଁ ।
(୭) ମନ ଦେଇ ଗୁରୁଙ୍କ କଥା ଶୁଣ ।
(୮) ଭୋକ ହେଲେ ପ୍ରିୟମ୍ବଦା ଖାଇବ ।

---

## କ୍ରିୟାର କାଳ

ଗଙ୍ଗାଧର ଅସୁଅଛି, ଗଦାଧର ପରିଶ୍ରମ କରୁଅଛି, ପବନ ବହେ—ଏହି ବାକ୍ୟଗୁଡ଼ିକରେ 'ଅସୁଅଛି', 'କରୁଅଛି', 'ବହେ'—**ବର୍ତ୍ତମାନ କାଳର କ୍ରିୟା** ।

ନରସିଂହ ଦେଖିଲା, ନଈ ବଢ଼ିଲା, ପକ୍ଷୀ ରବକଲେ—ଏହି ବାକ୍ୟଗୁଡ଼ିକରେ 'ଦେଖିଲା', 'ବଢ଼ିଲା', 'ରବକଲେ'—**ଭୂତ କାଳର କ୍ରିୟା** ଭୂତ କାଳକୁ **ଅତୀତ କାଳ** ମଧ୍ୟ କହନ୍ତି ।

ଆମ୍ବ ପାଚିବ, ମୟୂର ନାଚିବ, ସାପ ମରିବ, ହାଣ୍ଡି ଭାଙ୍ଗିବ, ଗୋପାଳ ଖାଇବ—ଏହି ବାକ୍ୟଗୁଡ଼ିକରେ 'ପାଚିବ', 'ନାଚିବ', 'ମରିବ', 'ଭାଙ୍ଗିବ', 'ଖାଇବ'—**ଭବିଷ୍ୟତ କାଳର କ୍ରିୟା** ।

'ସନ୍ଧ୍ୟାବେଳେ ବର୍ଷା ହେଲା, ତାହା ଆଗରୁ ଦୁଇ ପହରେ ଖରା ହୋଇଥିଲା'—ଏଠାରେ 'ହେଲା' ଭୂତକାଳର କ୍ରିୟା, 'ହୋଇଥିଲା' ପ୍ରାଗ୍‌ଭୂତ କାଳର କ୍ରିୟା ।

ଗୋଟିଏ କ୍ରିୟାର କାଳ ଭୂତ ହେଲେ, ତାହାର ଅଗ୍ରଗ କ୍ରିୟାର କାଳକୁ ପ୍ରାଗ୍‌ଭୂତ ବୋଲାଯାଏ ।

'ସୋମବାର ଦିନ ଶ୍ୟାମ ଆସିବ, ତାହା ଆଗରୁ ରବିବାର ଦିନ ରାମ ଆସିଥିବ'—ଏଠାରେ 'ଆସିବ'ଭବିଷ୍ୟତ କାଳର କ୍ରିୟା, 'ଆସିଥିବ' ପ୍ରାଗ୍ ଭବିଷ୍ୟତ କାଳର କ୍ରିୟା ।

ଗୋଟିଏ କ୍ରିୟାର କାଳ ଭବିଷ୍ୟତ ହେଲେ, ତାହାର ଅଗ୍ରଗ କ୍ରିୟାର କାଳକୁ ପ୍ରାଗ୍ ଭବିଷ୍ୟତ ବୋଲାଯାଏ ।

'ଈଶ୍ୱରଙ୍କୁ ଭଜ', 'ଦୀର୍ଘାୟୁ ହୁଅ', ମୂଲ୍ୟଅବ, ମୂଲ ଦିଅନ୍ତୁ'—ଏହି ବାକ୍ୟଗୁଡ଼ିକରେ ଭଜ, ହୁଅ, ଦିଅନ୍ତୁ—ଏହି କ୍ରିୟାଗୁଡ଼ିକ ଅନୁଜ୍ଞା ।

ଯେଉଁ କ୍ରିୟାରୁ ଆଦେଶ, ଆଶୀର୍ବାଦ ବା ପ୍ରାର୍ଥନା ଜଣାଯାଏ, ତାହାକୁ ଅନୁଜ୍ଞା ବୋଲାଯାଏ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟ ଗୁଡ଼ିକର କ୍ରିୟାର କାଳ ଲେଖି ଆଣ:—

(୧) ଗୁଡ଼ିରୁ ନବାତ ହୁଏ ।
(୨) ବୀର ହରେକୃଷ୍ଣପୁରରେ ଗୁଅଗିରାସ୍ତାଙ୍କର ଏବେ ଅନେକ ଯାଗ ଖମ୍ବ ଦିଶୁଛି ।
(୩) ପୁରୁଷୋତ୍ତମ ଦେବ କାଞ୍ଚୀରୁ ପଦ୍ମାବତୀଙ୍କୁ ଆଣିଥିଲେ ।
(୪) ଭଞ୍ଜନା ଉପାଧ୍ୟାୟରୁ ଆଜି ଉଠିଲେ ।

(୫) ପୂଜାରେ କାଲି ଭାଗ୍ୟ ଗ୍ରନ୍ଥି ଯାତ୍ରା ହେବ ।
(୬) ଯାତ୍ରୀମାନେ ଅଗରୁ ଅସିଥିବେ ।
(୭) ଗୁରୁ ଯାହା କହୁ ଅଛନ୍ତି ମନଦେଇ ତାହା ଶୁଣ ।
(୮) ଥରେ ସ୍ଥିରହ ହୁଅ ।

## କ୍ରିୟାର ପୁରୁଷ ଓ ବଚନ

କ୍ରିୟାର ତିନ ଗୋଟି ପୁରୁଷ ଓ ଦୁଇଗୋଟି ବଚନ ଅଛି । ତୁ, ତୁମ୍ଭେ ତୁମ୍ଭେମାନେ, ମୁଁ, ଅମ୍ଭେ, ଅମ୍ଭେମାନେ—ଏ ଗୁଡ଼ିକ ଭିନ୍ନ ଅନ୍ୟ ପଦ ଯେଉଁ କ୍ରିୟାର କର୍ତ୍ତା, ତାହା **ଆଦ୍ୟ ପୁରୁଷ** ର (ପ୍ରଥମ ପୁରୁଷ) କ୍ରିୟା । ତୁ, ତୁମ୍ଭେ ବା ତୁମ୍ଭେମାନେ ଯେଉଁ କ୍ରିୟାର କର୍ତ୍ତା, ତାହା **ମଧ୍ୟମ ପୁରୁଷର** କ୍ରିୟା । ମୁଁ, ଅମ୍ଭେ ବା ଅମ୍ଭେମାନେ ଯେଉଁ କ୍ରିୟାର କର୍ତ୍ତା, ତାହା **ଉତ୍ତମ ପୁରୁଷର** କ୍ରିୟା ।

'ମାଧବ ଗୁଲୁଅଛି'—ଏଠାରେ 'ଗୁଲୁଅଛି' ଆଦ୍ୟ ପୁରୁଷର କ୍ରିୟା । 'ତୁ ଦେଖୁଅଛୁ'—ଏଠାରେ 'ଦେଖୁଅଛୁ' ମଧ୍ୟମ ପୁରୁଷର କ୍ରିୟା । 'ମୁଁ କହିଲି'—ଏଠାରେ 'କହିଲି' ଉତ୍ତମ ପୁରୁଷର କ୍ରିୟା ।

କର୍ତ୍ତାର ଏକ ବଚନ ହେଲେ କ୍ରିୟାର ଏକ ବଚନ, କର୍ତ୍ତାର ବହୁବଚନ ହେଲେ କ୍ରିୟାର ବହୁବଚନ ହୁଏ ।

'ଘୋଡ଼ା ଚରୁଅଛି'—ଏଠାରେ 'ଚରୁଅଛି' ଏକବଚନର କ୍ରିୟା । 'ଘୋଡ଼ାଗୁଡ଼ିକ ଚରୁଅଛନ୍ତି'—ଏଠାରେ 'ଚରୁଅଛନ୍ତି' ବହୁବଚନର କ୍ରିୟା ।

ଅନୁଶୀଳନ—ନିମ୍ନଲିଖିତ ବାକ୍ୟ ଗୁଡ଼ିକରେ କ୍ରିୟାର ପୁରୁଷ ଓ ବଚନ ବୋଲ:—

(୧) ବ୍ରାହ୍ମଣମାନେ କେବଳ ଶର୍ମା ବୋଲି ଲେଖନ୍ତି ।
(୨) କ୍ଷତ୍ରିୟମାନେ କେବଳ ବର୍ମା ବୋଲି ଲେଖନ୍ତି ।

(୩) ପୁରୀର ନରେନ୍ଦ୍ରରେ ଚନ୍ଦନ ଯାତ୍ରା ହୁଏ ।
(୪) ତୁମ୍ଭେମାନେ କେବେ ବାରବାଟୀ ଦେଖିବାକୁ କଟକ ଯିବ ?
(୫) ସମ୍ବଲପୁରର ମଠ। ଦେଖିଲୁ ।
(୬) ମୁଁ ବ୍ରହ୍ମପୁରରୁ ଭଲେ ସୁନ୍ଦର ପାଠ ଅଣାଇବ ।
(୭) ଆମ୍ଭେମାନେ ସମସ୍ତେ ବାଲେଶ୍ୱରର ପଞ୍ଚଲିଙ୍ଗେଶ୍ୱର ଦେଖିବାକୁ ଯିବା ।

ଭିନ୍ନ ଭିନ୍ନ କାଳ, ପୁରୁଷ ଓ ବଚନରେ 'ଦେବା' କ୍ରିୟାର ରୂପ ନିମ୍ନରେ ଦେଖାଇ ଦଆଗଲା—

## ବର୍ତ୍ତମାନ କାଳ

| ପୁରୁଷ | ଏକବଚନ | ବହୁବଚନ |
|---|---|---|
| ଆଦ୍ୟ ପୁରୁଷ (ସେ) | ଦେଉଅଛି | ଦେଉଅଛନ୍ତି । |
| ମଧ୍ୟମ ପୁରୁଷ (ତୁ) | ଦେଉଅଛୁ | ଦେଉଅଛ । |
| ଉତ୍ତମ ପୁରୁଷ (ମୁଁ) | ଦେଉଅଛି | ଦେଉଅଛୁଁ । |

## ଭୂତ କାଳ

| ପୁରୁଷ | ଏକବଚନ | ବହୁବଚନ |
|---|---|---|
| ଆଦ୍ୟ ପୁରୁଷ— | ଦେଲା | ଦେଲେ । |
| ମଧ୍ୟମ ପୁରୁଷ— | ଦେଲୁ | ଦେଲ । |
| ଉତ୍ତମ ପୁରୁଷ— | ଦେଲି | ଦେଲୁଁ । |

## ପ୍ରାଗ୍‌ଭୂତ

| ପୁରୁଷ | ଏକବଚନ | ବହୁବଚନ |
|---|---|---|
| ଆଦ୍ୟ ପୁରୁଷ— | ଦେଇଥିଲା | ଦେଇଥିଲେ । |
| ମଧ୍ୟମ ପୁରୁଷ— | ଦେଇଥିଲୁ | ଦେଇଥିଲ । |
| ଉତ୍ତମ ପୁରୁଷ— | ଦେଇଥିଲି | ଦେଇଥିଲୁଁ |

## ଭବିଷ୍ୟତ କାଳ

| | | |
|---|---|---|
| ଅନ୍ୟ ପୁରୁଷ— | ଦେବ | ଦେବେ । |
| ମଧ୍ୟମ ପୁରୁଷ— | ଦେବୁ | ଦେବ । |
| ଉତ୍ତମ ପୁରୁଷ— | ଦେବି | ଦେବୁଁ । |

## ପ୍ରାଗ୍ ଭବିଷ୍ୟତ

| | | |
|---|---|---|
| ଅନ୍ୟ ପୁରୁଷ — | ଦେଇଥିବ | ଦେଇଥିବେ । |
| ମଧ୍ୟମ ପୁରୁଷ— | ଦେଇଥିବୁ | ଦେଇଥିବ । |
| ଉତ୍ତମ ପୁରୁଷ— | ଦେଇଥିବି | ଦେଇଥିବୁଁ । |

## ଅନୁଜ୍ଞା

| | | |
|---|---|---|
| ଅନ୍ୟ ପୁରୁଷ— | ଦେଉ | ଦିଅନ୍ତୁ । |
| ମଧ୍ୟମ ପୁରୁଷ— | ଦେ | ଦିଅ । |
| ଉତ୍ତମ ପୁରୁଷ— | ଦେଁ | ଦେଉଁ । |

# ଦ୍ୱିତୀୟ ଭାଗ

### ଅକର୍ମକ, ସକର୍ମକ ଓ ଦ୍ୱିକର୍ମକ କ୍ରିୟା

'ଅଗାଧୁ ଭାତ ଖାଉଅଛି'—ଏହି ବାକ୍ୟରେ **ଭାତ** 'ଖାଉଅଛି' କ୍ରିୟାର **କର୍ମ** । 'ସୁନା ମୁଣ୍ଡ କୁଣ୍ଡାଉଅଛି'—ଏଠାରେ **ମୁଣ୍ଡ** 'କୁଣ୍ଡାଉ ଅଛି' କ୍ରିୟାର **କର୍ମ** । 'ଗୋପୀନାଥ କାଶୀକୁ ଗଲା'—ଏଠାରେ **କାଶୀକୁ** 'ଗଲା' କ୍ରିୟାର **କର୍ମ** । ଖାଉଅଛି, କୁଣ୍ଡାଉ ଅଛି, ଗଲା—ଏହି ସବୁ କ୍ରିୟାର କର୍ମ ଅଛି । ଏ ପ୍ରକାର ସକର୍ମକ କ୍ରିୟା । ଯେଉଁ କ୍ରିୟାର କର୍ମ ଥାଏ, ତାହାକୁ **ସକର୍ମକ କ୍ରିୟା** କହନ୍ତି ।

ହଳଧର ହାଉଛନ୍ତି—ଏଠାରେ 'ହାଉଛନ୍ତି' କ୍ରିୟାର କର୍ମ ନାହିଁ ।
ରଘୁ ଶୋଇବ—ଏଠାରେ 'ଶୋଇବ' କ୍ରିୟାର କର୍ମ ନାହିଁ ।
ସନ୍ଧ୍ୟା ହେଲାଣି—ଏଠାରେ 'ହେଲାଣି' କ୍ରିୟାର କର୍ମ ନାହିଁ ।

ହାଉଛନ୍ତି, ଶୋଇବ, ହେଲାଣି—ଏ ଗୁଡ଼ିକ ଅକର୍ମକ କ୍ରିୟା। ଯେଉଁ କ୍ରିୟାର କର୍ମ ନ ଥାଏ, ତାହାକୁ **ଅକର୍ମକ କ୍ରିୟା** କହନ୍ତି ।

'ସେହି ଅନାଥ ଯଦୁକୁ ଖଣ୍ଡିଏ ବସ୍ତ୍ର ମାଗୁଅଛି'—ଏଠାରେ 'ମାଗୁଅଛି' କ୍ରିୟାର ଗୋଟିଏ କର୍ମ 'ବସ୍ତ୍ର',ଆଉ ଗୋଟିଏ କର୍ମ 'ଯଦୁକୁ'। 'ବସ୍ତ୍ର'**ପ୍ରଧାନ କର୍ମ** । 'ଯଦୁକୁ'**ଅପ୍ରଧାନ କର୍ମ** । 'ପଣ୍ଡିତେ ଗୋବିନ୍ଦଙ୍କୁ ବ୍ୟାକରଣ ପଢ଼ାଉ ଅଛନ୍ତି'—ଏହି ବାକ୍ୟରେ 'ପଢ଼ାଉ ଅଛନ୍ତି' କ୍ରିୟାର ଗୋଟିଏ କର୍ମ 'ବ୍ୟାକରଣ' । ଆଉ ଗୋଟିଏ କର୍ମ 'ଗୋବିନ୍ଦଙ୍କୁ', ବ୍ୟାକରଣ **ପ୍ରଧାନ କର୍ମ** । ଗୋବିନ୍ଦଙ୍କୁ **ଅପ୍ରଧାନ କର୍ମ** । ମାଗୁ-ଅଛନ୍ତି, ପଢ଼ାଉଅଛନ୍ତି—ଏ ଗୁଡ଼ିକ **ଦ୍ୱିକର୍ମକ କ୍ରିୟା** ।

ଯେଉଁ କ୍ରିୟାର ଗୋଡ଼ିଏ କର୍ମ ଥାଏ,ତାହାକୁ **ଦ୍ୱିକର୍ମକ କ୍ରିୟା** କହନ୍ତି । କର୍ମ ଯୋଡ଼ିକ ମଧ୍ୟରୁ ଗୋଟିଏ **ପ୍ରଧାନ କର୍ମ**, ଅନ୍ୟଟି **ଅପ୍ରଧାନ କର୍ମ** ହୋଇଥାଏ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟ ଗୁଡ଼ିକର କ୍ରିୟା ସକର୍ମକ କି ଅକର୍ମକ କହିଲ ଏବଂ ସକର୍ମକ ହୋଇଥିଲେ, ତାହାର କର୍ମ ପଦ ଦେଖାଇଦିଅ:—

(୧) ଜଗନ୍ନାଥଙ୍କ କୋଇଲି ବୈକୁଣ୍ଠରେ ମାଧବୀ ଫୁଟିଅଛି ।
(୨) ପାବନ୍ତ ହୋଜର ବୋଲ ମାନେ ।
(୩) ନନ୍ଦ ଦୁଇ କୁଳ ଖାଇଅଛି ।
(୪) ଦୁର୍ଗା ଶୁଆକୁ ଦୁଧ ପିଆଇଲା ।

(୫) ବାଉଁଶ ବଉଳରେ ମଲା ।
(୬) ନନ୍ଦ କୃଷ୍ଣଙ୍କୁ ଚନ୍ଦ୍ର ଦେଖାଉଥିଲେ ।
(୭) ଜଗନ୍ନାଥ ବୃଥା କାନ୍ଦୁଅଛି ।
(୮) ବସ୍ତମ୍ଭର ଦୌଡ଼ ବଢୁଅଛି ।

---

## ପ୍ରେରଣାର୍ଥ କ୍ରିୟା

'ଯଦୁ ପଢୁଅଛି' । 'ପଣ୍ଡିତେ ଯଦୁକୁ ପଢ଼ାଉଅଛନ୍ତି' ଏଠାରେ ପ୍ରଥମ ବାକ୍ୟରେ ଜଣେ କାର୍ଯ୍ୟ କରୁଅଛି ବୋଲି ପ୍ରକାଶ ପାଉଅଛି, ଦ୍ୱିତୀୟ ବାକ୍ୟରେ ଜଣେ କାର୍ଯ୍ୟ କରାଉଅଛି ବୋଲି ଜଣାଯାଉଅଛି । ଦ୍ୱିତୀୟ ବାକ୍ୟଟିର 'ପଢ଼ାଉଅଛନ୍ତି' **ପ୍ରେରଣାର୍ଥ କ୍ରିୟା** ।

ଏହିପରି ଯେଉଁ କ୍ରିୟାରେ କେହି କରାଉଅଛି ବୋଲି ପ୍ରକାଶ ପାଏ, ସେହିପରି କ୍ରିୟାକୁ **ପ୍ରେରଣାର୍ଥ କ୍ରିୟା** କହନ୍ତି ।

'ଦୁର୍ଗା ଶିଶୁକୁ ଦୁଧ ପିଆଉଅଛି'—ଏହି ବାକ୍ୟରେ 'ପିଆଉଅଛି' **ପ୍ରେରଣାର୍ଥ କ୍ରିୟା** ।

| ମୂଳ କ୍ରିୟା | ପ୍ରେରଣାର୍ଥ କ୍ରିୟା |
|---|---|
| ଖାଉଅଛି | ଖୁଆଉଅଛି । |
| ଶୁଣୁଅଛି | ଶୁଣାଉଅଛି । |
| ଅଣୁଅଛି | ଅଣାଉଅଛି । |
| ଡରୁଅଛି | ଡରାଉଅଛି । |
| କହୁଅଛି | କୁହାଉଅଛି । |
| ଦେଉଅଛି | ଦିଆଉଅଛି । |
| ଦେଖୁଅଛି | ଦେଖାଉଅଛି । |

| ମୂଳ କ୍ରିୟା | ପ୍ରେରଣାର୍ଥ କ୍ରିୟା |
| --- | --- |
| ଧୋଇବ | ଧୁଆଇବ । |
| ଜାଗିଲି | ଜଗାଇଲି । |
| ହସିବୁ | ହସାଇବୁ । |

ଭିନ୍ନ ଭିନ୍ନ କାଳ, ପୁରୁଷ ଓ ବଚନରେ ଅନ୍ୟ କ୍ରିୟାଗୁଡ଼ିକର ଯେପରି ରୂପ ହୁଏ, ପ୍ରେରଣାର୍ଥ କ୍ରିୟାଗୁଡ଼ିକର ମଧ୍ୟ ସେହିପରି ରୂପ ହୁଏ ।

ଅକର୍ମକ କ୍ରିୟାକୁ ପ୍ରେରଣାର୍ଥ କଲେ ସକର୍ମକ ହୁଏ । ସକର୍ମକ କ୍ରିୟାକୁ ପ୍ରେରଣାର୍ଥ କଲେ ତାହା ଦ୍ୱିକର୍ମକ ହୁଏ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟ ଗୁଡ଼ିକରେ କ୍ରିୟା ଅକର୍ମକ, ସକର୍ମକ କି ଦ୍ୱିକର୍ମକ ବୋଲ; ଏବଂ ପ୍ରେରଣାର୍ଥ କ୍ରିୟା ଥିଲେ ଚିହ୍ନାଇ ଦିଅ:—

(୧) ଗୌଡ଼ ଗାଈ ଚରାଉଅଛି ।
(୨) ବାନ୍ଧୁଣିଆ ବାନ୍ଧୁଅଛୁ ।
(୩) ଅବଧାନେ ପିଲାଙ୍କୁ ଗୋପୀଭାଷା ପଢ଼ାନ୍ତି ।
(୪) ବାମଦେବ ଭୈରବ ଦ୍ୱାରା ଟଙ୍କା ଗଣାଇଲା ।
(୫) ଅଜି ଅପରାହ୍ଣରେ ଧୋବା ଲୁଗା ଦେବ ।
(୬) କୁମ୍ଭାର ପୂର୍ଣ୍ଣକୁମ୍ଭ ଗଢ଼ୁଅଛୁ ।

---

## ବିଶେଷଣ

'ଦୟାଳୁ ଲୋକ ସମସ୍ତଙ୍କର ଉପକାର କରେ'—ଏହି ବାକ୍ୟରେ ଲୋକ ଗୋଟିଏ ବିଶେଷ୍ୟ ପଦ, 'ଦୟାଳୁ' ଏହି ପଦଟି ଲୋକର ଗୋଟିଏ ଗୁଣ ପ୍ରକାଶ କରୁଛି । 'ସୁନ୍ଦର ପୁଷ୍ପ ଦେଖିଲେ ଆନନ୍ଦ

ଲାଗେ'—ଏହି ବାକ୍ୟରେ 'ସୁନ୍ଦର' ପଦଟି ପୁଷ୍ପର ଗୋଟିଏ **ଗୁଣ** ପ୍ରକାଶ କରୁଅଛି । 'ପାଚିଲା ପଣସ ମିଠା ଲାଗେ'—ଏହି ବାକ୍ୟରେ 'ପାଚିଲା' ଏହି ପଦଟି ପଣସର **ଅବସ୍ଥା** ପ୍ରକାଶ କରୁଅଛି, ଏବଂ 'ମିଠା' ଏହି ପଦ ପଣସର ଗୁଣ ପ୍ରକାଶ କରୁଅଛି । 'ସେହି ଅନ୍ଧ ଲୋକଙ୍କୁ ଭିକ୍ଷା ଦିଅ'—ଏହି ବାକ୍ୟରେ ଅନ୍ଧ, ଏହି ପଦ ଲୋକର **ଅବସ୍ଥା** ପ୍ରକାଶ କରୁଅଛି । 'ସାତ ଦିନରେ ସପ୍ତାହ ହୁଏ'—ଏହି ବାକ୍ୟରେ "ସାତ" ଏହି ପଦ ଦିନର **ସଂଖ୍ୟା** ପ୍ରକାଶ କରୁଅଛି । "ମାଣେ ବିଲରେ ଧାନ ରୁଆ ହୋଇଅଛି"—ଏହି ବାକ୍ୟରେ 'ମାଣେ' ଏହି ପଦଟି ବିଲର **ପରିମାଣ** ପ୍ରକାଶ କରୁଅଛି ।

ଉଲ୍ଲିଖିତ ବାକ୍ୟ ଗୁଡ଼ିକରେ ଦସ୍ତାକ୍ତ, ସୁନ୍ଦର, ପାଚିଲା, ମିଠା, ଅନ୍ଧ, ସାତ, ମାଣେ—ଏ ଗୁଡ଼ିକ ବିଶେଷଣ ପଦ ।

'ଶ୍ୟାମ ଶୀଘ୍ର ଆସୁଅଛି'—ଏହି ବାକ୍ୟରେ 'ଶୀଘ୍ର' ଏହି ପଦ 'ଆସିବା' କାର୍ଯ୍ୟର **ଗୁଣ** ପ୍ରକାଶ କରୁଅଛି । ଏଠାରେ 'ଶୀଘ୍ର' ବିଶେଷଣ ପଦ । 'ହାତୀ ଧୀରେ ଝୁଲୁଅଛି'—ଏହି ବାକ୍ୟରେ 'ଧୀରେ' ଏହି ପଦ 'ଝୁଲିବା' କାର୍ଯ୍ୟର **ଗୁଣ** ପ୍ରକାଶ କରୁଅଛି । ଏଠାରେ 'ଧୀରେ' ବିଶେଷଣ ପଦ । 'ଗୁଡ଼ ଅତିଶୟ ମଧୁର ଅଟେ',—ଏହି ବାକ୍ୟରେ 'ମଧୁର' ଏହି ପଦ ଦ୍ୱାରା ଯେଉଁ **ଗୁଣ** ପ୍ରକାଶ ପାଉଅଛି, 'ଅତିଶୟ' ଏହି ପଦ ତାହାର **ପରିମାଣ** ଜଣାଉଅଛି । ଏଠାରେ 'ଅତିଶୟ' ବିଶେଷଣ ପଦ ।

ଯେଉଁ ପଦ ଗୁଣ, ଅବସ୍ଥା, ସଂଖ୍ୟା ବା ପରିମାଣ ବୁଝାଏ; ତାହାକୁ **ବିଶେଷଣ ପଦ** କହନ୍ତି ।

(୧) **ଦୟାଳୁ** ଲୋକ ସମସ୍ତଙ୍କର ଉପକାର କରେ ।
(୨) **ବୁଢ଼ା** ଲୋକେ ଅଳ୍ପ ଖାଆନ୍ତି ।
(୩) ବାପା ମୋତେ **ତିନି** ଟଙ୍କା ଦେଇ ଅଛନ୍ତି ।
(୪) **ପଚଣ** ଆମ୍ବରୁ ଅଧେ ପାଚିଲା ।

ଏଠାରେ ଦୟାଳୁ 'ଲୋକ'ର ବିଶେଷଣ, ବୁଢ଼ା 'ଲୋକେ'ର ବିଶେଷଣ, ତିନି 'ଟଙ୍କା'ର ବିଶେଷଣ, ପଚଣ, 'ଆମ୍ବରୁ' ଏହି ବିଶେଷ୍ୟର ବିଶେଷଣ ।

ହାତୀ **ଧୀରେ** ଝୁଲୁଅଛି । ସାପ **ମେଞ୍ଚି ମେଞ୍ଚି** ଚାଲୁଅଛି ।

ଏଠାରେ 'ଧୀରେ' ପଦଟି ଝୁଲୁଅଛି କ୍ରିୟାର ଓ 'ମେଞ୍ଚି ମେଞ୍ଚି' ଚାଲୁଅଛି କ୍ରିୟାର ବିଶେଷଣ ।

'ଗୁଡ଼ ଅତିଶୟ ମଧୁର ଅଟେ'—ଏହି ବାକ୍ୟରେ 'ଅତିଶୟ' ପଦ 'ମଧୁର' ଏହି ବିଶେଷଣର ବିଶେଷଣ ଅଟେ । 'ପୁରୁଷ ଠାରୁ ସ୍ତ୍ରୀ ଅଧିକ ସୁନ୍ଦର ଅଟେ'—ଏଠାରେ 'ଅଧିକ' ଏହି ପଦ 'ସୁନ୍ଦର' ଏହି ବିଶେଷଣର ବିଶେଷଣ ଅଟେ ।

ବିଶେଷଣ ତିନି ପ୍ରକାର—ବିଶେଷ୍ୟର ବିଶେଷଣ, କ୍ରିୟାବିଶେଷଣ, ବିଶେଷଣର ବିଶେଷଣ ।

ଯେଉଁ ବିଶେଷଣ ବିଶେଷ୍ୟର ଗୁଣ, ଅବସ୍ଥା, ସଂଖ୍ୟା, ପରିମାଣ ପ୍ରଭୃତି ବୁଝାଏ, ତାହାକୁ **ବିଶେଷ୍ୟର ବିଶେଷଣ** କହନ୍ତି ।

ଯେଉଁ ବିଶେଷଣ କୌଣସି କ୍ରିୟା ବା କାର୍ଯ୍ୟର ଗୁଣ, ଅବସ୍ଥା ବା ପରିମାଣ ପ୍ରକାଶ କରେ, ତାହାକୁ **କ୍ରିୟା ବିଶେଷଣ** କହନ୍ତି ।

ଯେଉଁ ବିଶେଷଣ, ଅନ୍ୟ ବିଶେଷଣ ଦ୍ୱାରା ସୂଚିତ ଗୁଣ ପ୍ରଭୃତିର ପରିମାଣ ବୁଝାଏ, ତାହାକୁ **ବିଶେଷଣର ବିଶେଷଣ** କହନ୍ତି

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟଗୁଡ଼ିକରେ ବିଶେଷଣ ଥିଲେ ଚିହ୍ନାଇ ଦିଅ ଏବଂ ତାହା କି ପ୍ରକାର ବିଶେଷଣ କହ ।—

(୧) ଏକ ଲୋକକୁ ଦେଖେ ନାହିଁ ।

(୨) ଅଳ୍ପଗୁଣ୍ଡା ଖଣ୍ଡିଏ ନେଳିଆ ଶାଢ଼ୀ ପିନ୍ଧିବ ।

(୩) ଧୋବ କଇଁ ଅପେକ୍ଷା ରଙ୍ଗ କଇଁ ଅଳ୍ପ ମିଳେ ।

(୪) ସେଠେ ଯୋଡ଼ିଏ ଘରେ ମାଣେ ଚଳ ବୁଣା ଯାଇପାରେ ।

---

## ଅବ୍ୟୟ

ବିଶେଷ୍ୟ, ସର୍ବନାମ, କ୍ରିୟା ଓ ବିଶେଷଣକୁ ଛଡ଼ା ଅନ୍ୟ ଯେତେ ପଦ ଅଛି ସେ ଗୁଡ଼ିକ **ଅବ୍ୟୟ** ।

ଓ, ଏବଂ, ପୁଣି, ଆଉ, ଅଧିକ—ଏ ଗୁଡ଼ିକ **ସଂଯୋଜକ ଅବ୍ୟୟ** ।

କିନ୍ତୁ, ମାତ୍ର, ନଚେତ୍—ଏ ଗୁଡ଼ିକ **ବିଯୋଜକ ଅବ୍ୟୟ** ।

ଆହା, ଓହୋ, ଉଃ—ଏ ଗୁଡ଼ିକ **ବିସ୍ମୟାଦି ସୂଚକ ଅବ୍ୟୟ** ।

କୁ, ଦ୍ୱାରା, ଠାରୁ, ର, ରେ ପ୍ରଭୃତି **ବିଭକ୍ତି ସ୍ୱରୂପକ ଅବ୍ୟୟ** ।

କି, କଅଣ, ତ, ଠିକ, କି—ଏ ଗୁଡ଼ିକ **ପ୍ରଶ୍ନ ସୂଚକ ଅବ୍ୟୟ** ।

ହଁ, ନିଜାଣି, ଅବଶ୍ୟ—ଏ ଗୁଡ଼ିକ **ନିଶ୍ଚୟ ବୋଧକ ଅବ୍ୟୟ** ।

---

## ଉପସର୍ଗ

ଅକାରାନ୍ତ (୪)—ପ୍ର, ଅପ, ଉପ, ଅବ ।

ଆକାରାନ୍ତ (୨)—ଆ, ପରା ।

ଇକାରାନ୍ତ (୮)—ଅତି, ପ୍ରତି, ଅଧି, ନି, ଅପି, ଅଭି, ପରି, ବି ।

ଉକାରାନ୍ତ (୨)—ଅନୁ, ସୁ ।

ହଳନ୍ତ (୪)—ଉତ୍, ସମ୍, ନିର୍, ଦୁର୍ ।

ଏହି କୋଡ଼ିଏଟି ଅବ୍ୟୟ ଧାତୁ ପୂର୍ବରେ ବସିଲେ ଏହାକୁ **ଉପସର୍ଗ** କହନ୍ତି ।

ଏହା ଛଡ଼ା ଆହୁରି ଅନେକ ପ୍ରକାର ଅବ୍ୟୟ ଅଛି ।

## ପଦାନ୍ୱୟ

ବାକ୍ୟ ମଧ୍ୟରେ ପଦ ଗୁଡ଼ିକର ପରିଚୟ ଓ ପରସ୍ପର ସମ୍ବନ୍ଧକୁ **ପଦାନ୍ୱୟ** କହନ୍ତି ।

ଦୁଇଟିରୁ ଊଣା ପଦରେ ବାକ୍ୟ ହୋଇ ନ ପାରେ । ଏହି ଦୁଇଟିରୁ ଗୋଟିଏ ପଦର ନାମ **କର୍ତ୍ତା**, ଅପରଟିର ନାମ **କ୍ରିୟା** । ଦୁର୍ଗା ଶୋଇଅଛି—ଏଠାରେ 'ଦୁର୍ଗା' **କର୍ତ୍ତା**, 'ଶୋଇଅଛି' **କ୍ରିୟା** । ମେଘ ବର୍ଷିଲା—ଏହି ବାକ୍ୟରେ ମେଘ '**କର୍ତ୍ତା**' 'ବର୍ଷିଲା' **କ୍ରିୟା** । ଖାଅ —ଏହି ବାକ୍ୟରେ 'ତୁମ୍ଭେ' ଏହି କର୍ତ୍ତୃପଦ **ଉହ୍ୟ** ଅଛି । 'ଖାଅ' **କ୍ରିୟାପଦ** ।

ବାକ୍ୟର ପ୍ରଧାନ ଅଂଶ କ୍ରିୟା । କ୍ରିୟାପଦ ସହିତ କର୍ତ୍ତା ଓ ଅନ୍ୟାନ୍ୟ କାରକର ଏବଂ କ୍ରିୟା ବିଶେଷଣର ଅନ୍ୱୟ ଥାଏ । କର୍ତ୍ତା ସହିତ ତାହା ବିଶେଷଣର ଏବଂ ସମ୍ବନ୍ଧ ପଦର ଅନ୍ୱୟ ଥାଏ ।

'ରଜାଙ୍କର ପାଞ୍ଚଘୋଡ଼ା ଘୋଡ଼ାଶାଳରୁ ଦଉଡ଼ରେ ପଡ଼ିଆକୁ ଧୀରେ ଧୀରେ ଯାଉଅଛି' ଏହି ବାକ୍ୟରେ 'ଘୋଡ଼ା' ଏବଂ 'ଯାଉଅଛି' ଏହି ଦୁଇଟି ପ୍ରଧାନ ଅଂଶ । 'ଘୋଡ଼ା' **କର୍ତ୍ତା**, 'ଯାଉଅଛି' '**କ୍ରିୟା**' । 'ଘୋଡ଼ା' ଏହି କର୍ତ୍ତୃପଦ ସହିତ, ବିଶେଷଣ 'ପାଞ୍ଚ' ଏବଂ ସମ୍ବନ୍ଧ ପଦ 'ରଜାଙ୍କର' ଏହି ଦୁଇ ପଦର ଅନ୍ୱୟ ଅଛି । 'ଯାଉଅଛି' କ୍ରିୟା ପଦ ସହିତ କର୍ତ୍ତାକାରକ 'ଘୋଡ଼ା' ଅପାଦାନ କାରକ 'ଘୋଡ଼ାଶାଳରୁ'

କର୍ମ କାରକ ଦଶହର୍ ‘ପଢ଼ୁଅଛୁ’ ଏବଂ କ୍ରିୟା ବିଶେଷଣ ‘ଧୀରେ ଧୀରେ’ ଏହି ଗୁଡ଼ିକର ଅନ୍ୱୟ ଅଛି ।

## ସନ୍ଧି

ଦୁଇ ବର୍ଣ୍ଣ ପରସ୍ପର ନିକଟବର୍ତ୍ତୀ ହେଲେ ମିଳିତ ହୁଅନ୍ତି । ସେହି ମିଳନକୁ ସନ୍ଧି କହନ୍ତି ।

## ସ୍ୱର ସନ୍ଧି

ସ୍ୱରବର୍ଣ୍ଣ ସ୍ୱରବର୍ଣ୍ଣରେ ଯେଉଁ ସନ୍ଧି ହୁଏ, ତାହାକୁ **ସ୍ୱରସନ୍ଧି** କହନ୍ତି ।

**କୁଶ ଅଙ୍କୁର**—ଏଠାରେ ‘କୁଶ’ ଏହାର ‘ଶ’ ଶେଷରେ ସ୍ୱରବର୍ଣ୍ଣ ‘ଅ’ ଅଛି, ‘ଅଙ୍କୁର’ ଏହାର ପ୍ରଥମରେ ସ୍ୱରବର୍ଣ୍ଣ ‘ଅ’ ଅଛି, ଏହି ଦୁଇ **ଅ** ମିଳି **ଆ** ହେଲା, ସେହି **ଆ** ‘ଶ୍’ରେ ମିଶିଲା । କୁଶ + ଅଙ୍କୁର = କୁଶାଙ୍କୁର । ସେହିପରି ଶଶ + ଅଙ୍କ = ଶଶାଙ୍କ ।

ଅ ଉତ୍ତାରୁ **ଅ** ଥିଲେ ଉଭୟ ମିଳି **ଆ** ହୁଏ । **ଆ** ପୂର୍ବ ବର୍ଣ୍ଣରେ ମିଶେ । (ଅ + ଅ = ଆ)

**ହିମ ଆଳୟ**—ଏଠାରେ ‘ହିମ’ ଏହାର ‘ମ’ ଶେଷରେ **ଅ** ଅଛି’ ‘ଆଳୟ’ ଏହାର ପ୍ରଥମରେ **ଆ** ଅଛି, ଏହି **ଅ** ଓ **ଆ** ମିଳି **ଆ** ହେଲା, **ଆ** ‘ମ୍’ରେ ମିଶିଲା । ହିମ + ଆଳୟ = ହିମାଳୟ । ସେହିପରି କୁଶ + ଆସନ = କୁଶାସନ ।

**ଅ** ଉତ୍ତାରୁ **ଆ** ଥିଲେ ଉଭୟ ମିଳି **ଆ** ହୁଏ । **ଆ** ପୂର୍ବ ବର୍ଣ୍ଣରେ ମିଶେ । (ଅ + ଆ = ଆ)

**ଯଥା ଅର୍ଥ**—ଏଠାରେ ‘ଯଥା’ ଏହାର ‘ଥା’ ଶେଷରେ **ଆ** ଅଛି, ‘ଅର୍ଥ’ ଏହାର ପ୍ରଥମରେ **ଅ** ଅଛି, ଏହି **ଆ** ଓ **ଅ** ମିଳି **ଆ**

ହେଲା, **ଆ** 'ଥ୍'ରେ ମିଶିଲା । ଯଥା + ଅର୍ଥ = ଯଥାର୍ଥ । ସେହିପରି ମହା + ଅର୍ଣ୍ଣବ = ମହାର୍ଣ୍ଣବ ।

**ଆ** ଉତ୍ତାରୁ **ଅ** ଥିଲେ ଉଭୟ ମିଳି **ଆ** ହୁଏ । **ଆ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଅ = ଆ) ।

**ବିଦ୍ୟା ଳୟ**—ଏଠାରେ 'ବିଦ୍ୟା' ଏହାର 'ଦ୍ୟା' ଶେଷରେ **ଆ** ଅଛି, 'ଆଳୟ' ଏହାର ପ୍ରଥମରେ **ଆ** ଅଛି; **ଆ** ଓ **ଆ** ମିଳି **ଆ** ହେଲା, **ଆ** 'ଦ୍ୟ'ରେ ମିଶିଲା । ବିଦ୍ୟା + ଆଳୟ = ବିଦ୍ୟାଳୟ । ସେହିପରି ମହା + ଆଶୟ = ମହାଶୟ ।

**ଆ** ଉତ୍ତାରୁ **ଆ** ଥିଲେ ଉଭୟ ମିଳି **ଆ** ହୁଏ । **ଆ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଆ = ଆ) ।

**ମୁନି ଇନ୍ଦ୍ର**—ଏଠାରେ 'ମୁନି' ଏହାର ଶେଷରେ **ଇ** ଅଛି । 'ଇନ୍ଦ୍ର' ଏହାର ପ୍ରଥମରେ **ଇ** ଅଛି; **ଇ** ଓ **ଇ** ମିଳି **ଈ** ହେଲା, **ଈ** 'ନ୍'ରେ ମିଶିଲା । ମୁନି + ଇନ୍ଦ୍ର = ମୁନୀନ୍ଦ୍ର । ପ୍ରତି + ଇତି = ପ୍ରତୀତି ।

**ଇ** ଉତ୍ତାରୁ **ଇ** ଥିଲେ ଉଭୟ ମିଳି **ଈ** ହୁଏ । **ଈ** ପୂର୍ବ ବର୍ଣ୍ଣରେ ମିଶେ (ଇ + ଇ = ଈ) ।

**ପରି ଈକ୍ଷା**—ଏଠାରେ 'ପରି' ଏହାର ଶେଷରେ **ଇ** ଅଛି, 'ଈକ୍ଷା' ଏହାର ପ୍ରଥମରେ **ଈ** ଅଛି; **ଇ** ଓ **ଈ** ମିଳି **ଈ** ହେଲା । **ଈ** 'ର'ରେ ମିଶିଲା । ପରି + ଈକ୍ଷା = ପରୀକ୍ଷା; କ୍ଷିତି + ଈଶ = କ୍ଷିତୀଶ ।

**ଇ** ଉତ୍ତାରୁ **ଈ** ଥିଲେ ଉଭୟ ମିଳି **ଈ** ହୁଏ । **ଈ** ପୂର୍ବ ବର୍ଣ୍ଣରେ ମିଶେ । (ଇ + ଈ = ଈ)

**ମହୀଇନ୍ଦ୍ର**—ଏଠାରେ 'ମହୀ' ଏହାର ଶେଷରେ **ଈ** ଅଛି, 'ଇନ୍ଦ୍ର' ଏହାର ପ୍ରଥମରେ **ଇ** ଅଛି, **ଈ** ଓ **ଇ** ମିଳି **ଈ** ହେଲା। **ଈ** 'ହ୍'ରେ ମିଶିଲା। ମହୀ+ଇନ୍ଦ୍ର=ମହୀନ୍ଦ୍ର। ଗୋପୀ+ଇନ୍ଦ୍ର=ଗୋପୀନ୍ଦ୍ର।

**ଈ** ଉତ୍ତାରୁ **ଇ** ଥିଲେ ଉଭୟ ମିଳି **ଈ** ହୁଏ। **ଈ** ପୂର୍ବବର୍ଣ୍ଣରେ ମିଶେ (ଈ+ଇ=ଈ)।

**ପାର୍ବତୀ ଈଶ୍ୱର**—ଏଠାରେ 'ପାର୍ବତୀ' ଏହାର ଶେଷରେ **ଈ** ଅଛି, 'ଈଶ୍ୱର' ଏହାର ପ୍ରଥମରେ **ଈ** ଅଛି, **ଈ** ଓ **ଈ** ମିଳି **ଈ** ହେଲା, **ଈ** 'ତ୍'ରେ ମିଶିଲା। ପାର୍ବତୀ+ଈଶ୍ୱର=ପାର୍ବତୀଶ୍ୱର। ଲକ୍ଷ୍ମୀ+ଈଶ=ଲକ୍ଷ୍ମୀଶ।

**ଈ** ଉତ୍ତାରୁ **ଈ** ଥିଲେ ଉଭୟ ମିଳି **ଈ** ହୁଏ। **ଈ** ପୂର୍ବ ବର୍ଣ୍ଣରେ ମିଶେ (ଈ+ଈ=ଈ)।

**କଟୂକ୍ତି**—ଏଠାରେ 'କଟୁ' ଏହାର ଶେଷରେ **ଉ** ଅଛି, 'ଉକ୍ତି' ଏହାର ପ୍ରଥମରେ **ଉ** ଅଛି। **ଉ** ଓ **ଉ** ମିଳି **ଊ** ହେଲା, **ଊ** 'ଟ୍'ରେ ମିଶିଲା। କଟୁ+ଉକ୍ତି=କଟୂକ୍ତି। ଗୁରୁ+ଉପଦେଶ=ଗୁରୂପଦେଶ।

**ଉ** ଉତ୍ତାରୁ **ଉ** ଥିଲେ ଉଭୟ ମିଳି **ଊ** ହୁଏ। **ଊ** ପୂର୍ବ ବର୍ଣ୍ଣରେ ମିଶେ (ଉ+ଉ=ଊ)।

**ସିନ୍ଧୂର୍ମି**—ଏଠାରେ 'ସିନ୍ଧୁ' ଏହାର ଶେଷରେ **ଉ** ଅଛି, 'ଊର୍ମି' ଏହାର ପ୍ରଥମରେ **ଊ** ଅଛି **ଉ** ଓ **ଊ** ମିଳି **ଊ** ହେଲା; **ଊ** 'ଧ୍'ରେ ମିଶିଲା। ସିନ୍ଧୁ+ଊର୍ମି=ସିନ୍ଧୂର୍ମି। ମୃଦୁ+ଊର୍ମିଳା=ମୃଦୂର୍ମିଳା।

**ଉ** ପରରୁ **ଉ** ଥିଲେ ଉଭୟ ମିଳି **ଊ** ହୁଏ । **ଊ** ପୂର୍ବ ବର୍ଣ୍ଣରେ ମିଶେ (ଉ + ଉ = ଊ) ।

**ଭୂଉଦର**—ଏଠାରେ 'ଭୂ' ଏହାର ଶେଷରେ **ଊ** ଅଛି । 'ଉଦର' ଏହାର ପ୍ରଥମରେ **ଉ** ଅଛି, **ଊ** ଓ **ଉ** ମିଳି **ଊ** ହେଲା । **ଊ** 'ଭ୍'ରେ ମିଶିଲା । ଭୂ + ଉଦର = ଭୂଦର । ବଧୂ + ଉତ୍ସବ = ବଧୂତ୍ସବ ।

**ଊ** ପରରୁ **ଉ** ଥିଲେ ଉଭୟ ମିଳି **ଊ** ହୁଏ । **ଊ** ପୂର୍ବ ବର୍ଣ୍ଣରେ ମିଶେ (ଊ + ଉ = ଊ) ।

**ଭୂଊର୍ଦ୍ଧ୍ୱ**—ଏଠାରେ 'ଭୂ' ଏହାର ଶେଷରେ **ଊ** ଅଛି, 'ଊର୍ଦ୍ଧ୍ୱ' ଏହାର ପ୍ରଥମରେ **ଊ** ଅଛି, **ଊ** ଓ **ଊ** ମିଳି **ଊ** ହେଲା, **ଊ** 'ଭ୍'ରେ ମିଶିଲା । ଭୂ + ଊର୍ଦ୍ଧ୍ୱ = ଭୂର୍ଦ୍ଧ୍ୱ । ବଧୂ + ଊର୍ମିଳା = ବଧୂର୍ମିଳା ।

**ଊ** ପରରୁ **ଊ** ଥିଲେ ଉଭୟ ମିଳି **ଊ** ହୁଏ । **ଊ** ପୂର୍ବ ବର୍ଣ୍ଣରେ ମିଶେ (ଊ + ଊ = ଊ) ।

**ପିତୃଋଣ**—ଏଠାରେ 'ପିତୃ' ଏହାର ଶେଷରେ **ଋ** ଅଛି, 'ଋଣ' ଏହାର ପ୍ରଥମରେ ଋ ଅଛି **ଋ** ଓ **ଋ** ମିଳି **ୠ** ହେଲା, **ୠ** 'ତ୍'ରେ ମିଶିଲା । ପିତୃ + ଋଣ = ପିତୄଣ । ଭ୍ରାତୃ + ଋଦ୍ଧି = ଭ୍ରାତୄଦ୍ଧି ।

**ଋ** ପରରୁ **ଋ** ଥିଲେ ଉଭୟ ମିଳି **ୠ** ହୁଏ । **ୠ** ପୂର୍ବ ବର୍ଣ୍ଣରେ ମିଶେ (ଋ + ଋ = ୠ) ।

**ବାଳଇନ୍ଦୁ**—ଏଠାରେ 'ବାଳ' ଏହାର ଶେଷରେ **ଅ** ଅଛି । 'ଇନ୍ଦୁ' ଏହାର ପ୍ରଥମରେ **ଇ** ଅଛି, **ଅ** ଓ **ଇ** ମିଳି **ଏ** ହେଲା, **ଏ** 'ଳ୍'ରେ ମିଶିଲା । ବାଳ + ଇନ୍ଦୁ = ବାଳେନ୍ଦୁ ।

**ଅ** ଉତ୍ତରୁ **ଇ** ଥିଲେ ଉଭୟ ମିଳି **ଏ** ହୁଏ । **ଏ** ପୂର୍ବ ବର୍ଣ୍ଣରେ ମିଶେ (ଅ+ଇ=ଏ) ।

**ଗଣ ଈଶ**—ଏଠାରେ 'ଗଣ' ଏହାର ଶେଷରେ **ଅ** ଅଛି, 'ଈଶ' ଏହାର ପ୍ରଥମରେ **ଈ** ଅଛି; **ଅ** ଓ **ଈ** ମିଳି **ଏ** ହେଲା; **ଏ** 'ଣ୍'ରେ ମିଶିଲା । ଗଣ+ଈଶ=ଗଣେଶ ।

**ଅ** ଉତ୍ତରୁ **ଈ** ଥିଲେ ଉଭୟ ମିଳି **ଏ** ହୁଏ । **ଏ** ପୂର୍ବ ବର୍ଣ୍ଣରେ ମିଶେ (ଅ+ଈ=ଏ) ।

**ଯଥା ଇଷ୍ଟ**—ଏଠାରେ 'ଯଥା' ଏହାର ଶେଷରେ **ଆ** ଅଛି, 'ଇଷ୍ଟ' ଏହାର ପ୍ରଥମରେ **ଇ** ଅଛି; **ଆ** ଓ **ଇ** ମିଳି **ଏ** ହେଲା; **ଏ** 'ଥ୍'ରେ ମିଶିଲା । ଯଥା+ଇଷ୍ଟ=ଯଥେଷ୍ଟ ।

**ଆ** ଉତ୍ତରୁ **ଇ** ଥିଲେ ଉଭୟ ମିଳି **ଏ** ହୁଏ । **ଏ** ପୂର୍ବ ବର୍ଣ୍ଣରେ ମିଶେ (ଆ+ଇ=ଏ) ।

**ମହା ଈଶ୍ୱର**—ଏଠାରେ 'ମହା' ଏହାର ଶେଷରେ **ଆ** ଅଛି, 'ଈଶ୍ୱର' ଏହାର ପ୍ରଥମରେ **ଈ** ଅଛି, **ଆ** ଓ **ଈ** ମିଳି **ଏ** ହେଲା । **ଏ** 'ହ୍'ରେ ମିଶିଲା । ମହା+ଈଶ୍ୱର=ମହେଶ୍ୱର ।

**ଆ** ଉତ୍ତରୁ **ଈ** ଥିଲେ ଉଭୟ ମିଳି **ଏ** ହୁଏ । **ଏ** ପୂର୍ବ ବର୍ଣ୍ଣରେ ମିଶେ (ଆ+ଈ=ଏ) ।

**ଲମ୍ବ ଉଦର**—ଏଠାରେ 'ଲମ୍ବ' ଏହାର ଶେଷରେ **ଅ** ଅଛି, 'ଉଦର' ଏହାର ପ୍ରଥମରେ **ଉ** ଅଛି; **ଅ** ଓ **ଉ** ମିଳି **ଓ** ହେଲା, **ଓ** 'ମ୍ବ୍'ରେ ମିଶିଲା । ଲମ୍ବ+ଉଦର=ଲମ୍ବୋଦର ।

**ଅ** ଉତ୍ତରୁ **ଉ** ଥିଲେ ଉଭୟ ମିଳି **ଓ** ହୁଏ । **ଓ** ପୂର୍ବ ବର୍ଣ୍ଣରେ ମିଶେ (ଅ+ଉ=ଓ) ।

**ସାଗର ଊର୍ମି**—ଏଠାରେ 'ସାଗର' ଏହାର ଶେଷରେ **ଅ** ଅଛି, 'ଊର୍ମି' ଏହାର ପ୍ରଥମରେ **ଊ** ଅଛି, **ଅ** ଓ **ଊ** ମିଳି **ଓ** ହେଲା, **ଓ** 'ର୍'ରେ ମିଶିଲା । ସାଗର + ଊର୍ମି = ସାଗରୋର୍ମି ।

**ଅ** ଉତ୍ତାରୁ **ଊ** ଥିଲେ ଉଭୟ ମିଳି **ଓ** ହୁଏ । **ଓ** ପୂର୍ବ ବର୍ଣ୍ଣରେ ମିଶେ (ଅ + ଊ = ଓ) ।

**ଗଙ୍ଗା ଉଦକ**—ଏଠାରେ 'ଗଙ୍ଗା' ଏହାର ଶେଷରେ **ଆ** ଅଛି, 'ଉଦକ' ଏହାର ପ୍ରଥମରେ **ଉ** ଅଛି, **ଆ** ଓ **ଉ** ମିଳି **ଓ** ହେଲା, **ଓ** 'ଙ୍'ରେ ମିଶିଲା । ଗଙ୍ଗା + ଉଦକ = ଗଙ୍ଗୋଦକ ।

**ଆ** ଉତ୍ତାରୁ **ଉ** ଥିଲେ ଉଭୟ ମିଳି **ଓ** ହୁଏ । **ଓ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଉ = ଓ) ।

**ରମ୍ଭା ଊରୁ**—ଏଠାରେ 'ରମ୍ଭା' ଏହାର ଶେଷରେ **ଆ** ଅଛି, 'ଊରୁ' ଏହାର ପ୍ରଥମରେ **ଊ** ଅଛି, **ଆ** ଓ **ଊ** ମିଳି **ଓ** ହେଲା, **ଓ** 'ମ୍'ରେ ମିଶିଲା । ରମ୍ଭା + ଊରୁ = ରମ୍ଭୋରୁ ।

**ଆ** ଉତ୍ତାରୁ **ଊ** ଥିଲେ ଉଭୟ ମିଳି **ଓ** ହୁଏ । ପୂର୍ବ ବର୍ଣ୍ଣରେ ମିଶେ (ଆ + ଊ = ଓ) ।

**ଦେବଋଷି**—ଏଠାରେ 'ଦେବ' ଏହାର ଶେଷରେ **ଅ** ଅଛି, 'ଋଷି' ଏହାର ପ୍ରଥମରେ **ଋ** ଅଛି, **ଅ** ଓ **ଋ** ମିଳି ଅର୍ ହେଲା । **ଅ** 'ବ୍'ରେ ମିଶିଲା, ର୍ 'ଷ' ସଙ୍ଗରେ ମିଶି ତାହା ଉପରେ ରେଫ୍ ହେଲା । ଦେବ + ଋଷି = ଦେବର୍ଷି ।

**ଅ** ଉତ୍ତାରୁ **ଋ** ଥିଲେ ଉଭୟ ମିଳି **ଅର୍** ହୁଏ । **ଅ** ପୂର୍ବ ବର୍ଣ୍ଣରେ ମିଶେ, 'ର୍' ପର ବର୍ଣ୍ଣରେ ରେଫ୍ ହୋଇ ମିଶେ (ଅ + ଋ = ଅର୍) ।

**ଜନ ଏକ**—ଏଠାରେ 'ଜନ' ଏହାର ଶେଷରେ **ଅ** ଅଛି, 'ଏକ' ଏହାର ପ୍ରଥମରେ **ଏ** ଅଛି, **ଅ** ଓ **ଏ** ମିଳି **ଐ** ହେଲା, ଐ 'ନ୍'ରେ ମିଶିଲା । ଜନ + ଏକ = ଜନୈକ ।

**ଅ** ଉତ୍ତରୁ **ଏ** ଥିଲେ ଉଭୟ ମିଳି **ଐ** ହୁଏ । **ଐ** ପୂର୍ବ ବର୍ଣ୍ଣରେ ମିଶେ (ଅ + ଏ = ଐ) ।

**ମତ ଐକ୍ୟ**—ଏଠାରେ ମତ ଏହାର ଶେଷରେ **ଅ** ଅଛି । 'ଐକ୍ୟ' ଏହାର ପ୍ରଥମରେ **ଐ** ଅଛି, **ଅ** ଓ **ଐ** ମିଳି **ଐ** ହେଲା । **ଐ** 'ତ୍'ରେ ମିଶିଲା । ମତ + ଐକ୍ୟ = ମତୈକ୍ୟ ।

**ଅ** ଉତ୍ତରୁ **ଐ** ଥିଲେ ଉଭୟ ମିଳି **ଐ** ହୁଏ । **ଐ** ପୂର୍ବ ବର୍ଣ୍ଣରେ ମିଶେ (ଅ + ଐ = ଐ) ।

**ତଥା ଏବ**—ଏଠାରେ 'ତଥା' ଏହାର ଶେଷରେ **ଆ** ଅଛି, 'ଏବ' ଏହାର ପ୍ରଥମରେ **ଏ** ଅଛି, **ଆ** ଓ **ଏ** ମିଳି **ଐ** ହେଲା, **ଐ** 'ଥ୍'ରେ ମିଶିଲା । ତଥା + ଏବ = ତଥୈବ ।

**ଆ** ଉତ୍ତରୁ **ଏ** ଥିଲେ ଉଭୟ ମିଳି **ଐ** ହୁଏ । **ଐ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଏ = ଐ) ।

**ମହା ଐରାବତ**—ଏଠାରେ 'ମହା' ଏହାର ଶେଷରେ **ଆ** ଅଛି, 'ଐରାବତ' ଏହାର ପ୍ରଥମରେ **ଐ** ଅଛି, **ଆ** ଓ **ଐ** ମିଳି **ଐ** ହେଲା । **ଐ** 'ହ୍'ରେ ମିଶିଲା । ମହା + ଐରାବତ = ମହୈରାବତ ।

**ଆ** ଉତ୍ତରୁ **ଐ** ଥିଲେ ଉଭୟ ମିଳି **ଐ** ହୁଏ । **ଐ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଐ = ଐ) ।

**ଜଳ ଓଘ**—ଏଠାରେ 'ଜଳ' ଏହାର ଶେଷରେ **ଅ** ଅଛି, 'ଓଘ' ଏହାର ପ୍ରଥମରେ **ଓ** ଅଛି, **ଅ** ଏବଂ **ଓ** ମିଳି **ଔ** ହେଲା । ଔ 'ଳ୍'ରେ ମିଶିଲା । ଜଳ + ଓଘ = ଜଳୌଘ ।

**ଅ** ଉତ୍ତାରୁ **ଓ** ଥିଲେ ଉଭୟ ମିଳି **ଔ** ହୁଏ । **ଔ** ପୂର୍ବ ବର୍ଣ୍ଣରେ ମିଶେ (ଅ + ଓ = ଔ) ।

**ନବ ଔଷଧ**—ଏଠାରେ 'ନବ' ଏହାର ଶେଷରେ **ଅ** ଅଛି, 'ଔଷଧ' ଏହାର ପ୍ରଥମରେ **ଔ** ଅଛି; **ଅ** ଓ **ଔ** ମିଳି **ଔ** ହେଲା । **ଔ** 'ବ୍'ରେ ମିଶିଲା । ନବ + ଔଷଧ = ନବୌଷଧ ।

**ଅ** ଉତ୍ତାରୁ **ଔ** ଥିଲେ ଉଭୟ ମିଳି **ଔ** ହୁଏ । **ଔ** ପୂର୍ବ ବର୍ଣ୍ଣରେ ମିଶେ (ଅ + ଔ = ଔ) ।

**ମହାଓଷଧି**—ଏଠାରେ 'ମହା' ଏହାର ଶେଷରେ **ଆ** ଅଛି, 'ଓଷଧି' ଏହାର ପ୍ରଥମରେ **ଓ** ଅଛି, **ଆ** ଏବଂ **ଓ** ମିଳି **ଔ** ହେଲା । **ଔ** 'ହ୍'ରେ ମିଶିଲା । ମହା + ଓଷଧି = ମହୌଷଧି ।

**ଆ** ଉତ୍ତାରୁ **ଓ** ଥିଲେ ଉଭୟ ମିଳି **ଔ** ହୁଏ । **ଔ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଓ = ଔ) ।

**ମହା ଔଷଧ**—ଏଠାରେ 'ମହା' ଏହାର ଶେଷରେ **ଆ** ଅଛି, 'ଔଷଧ' ଏହାର ପ୍ରଥମରେ **ଔ** ଅଛି । **ଆ** ଏବଂ **ଔ** ମିଳି **ଔ** ହେଲା । **ଔ** 'ହ୍'ରେ ମିଶିଲା । ମହା + ଔଷଧ = ମହୌଷଧ ।

**ଆ** ଉତ୍ତାରୁ **ଔ** ଥିଲେ ଉଭୟ ମିଳି **ଔ** ହୁଏ । **ଔ** ପୂର୍ବ ବର୍ଣ୍ଣରେ ମିଶେ (ଆ + ଔ = ଔ) ।

**ଅତିଅଳ୍ପ**—ଏଠାରେ 'ଅତି' ଏହାର ଶେଷରେ **ଇ** ଅଛି । 'ଅଳ୍ପ' ଏହାର ପ୍ରଥମରେ **ଇଣ** ଭିନ୍ନ ସ୍ୱରବର୍ଣ୍ଣ ଅ ଅଛି **ଇ** ଠାରେ ଯ୍ ହେଲା, **ଯ୍** ଓ **ଅ** 'ତ୍'ରେ ମିଶିଲା । ଅତି + ଅଳ୍ପ = ଅତ୍ୟଳ୍ପ । ସେହିପରି

ନଦୀ + ଅମ୍ବୁ = ନଦ୍ୟମ୍ବୁ । ଅତି + ଅଗ୍ନିର = ଅତ୍ୟାଗ୍ନିର । ଅଭି + ଉଦୟ = ଅଭ୍ୟୁଦୟ । ନି + ଊନ = ନ୍ୟୂନ । ପ୍ରତି + ଏକ = ପ୍ରତ୍ୟେକ । ଅତି + ଔଦାର୍ଯ୍ୟ = ଅତ୍ୟୌଦାର୍ଯ୍ୟ ।

**ଇ** କିମ୍ବା **ଈ** ପରରୁ **ଇ ଈ ଭିନ୍ନ** ସ୍ୱରବର୍ଣ୍ଣ ଥିଲେ **ଇ ଈ** ଠାରେ **ଯ୍** ହୁଏ । **ଯ୍** ଓ ତା ପରବର୍ତ୍ତୀ ସ୍ୱର ପୂର୍ବବର୍ଣ୍ଣରେ ମିଶେ ।

**ଅନୁ ଅୟ**—ଏଠାରେ 'ଅନୁ' ଏହାର ଶେଷରେ **ଉ** ଅଛି, 'ଅୟ' ଏହାର ପ୍ରଥମରେ **ଉ ଊ ଭିନ୍ନ** ସ୍ୱରବର୍ଣ୍ଣ **ଅ** ଅଛି । **ଉ** ଠାରେ ବ୍ ହେଲା । **ବ୍** ଓ **ଅ** 'ନ'ରେ ମିଶିଲା । ଅନୁ + ଅୟ = ଅନ୍ୱୟ । ସେହି ପରି ବହୁ + ଅବର ବହ୍ୱାବର । ଅନୁ + ଇତ = ଅନ୍ୱିତ । ବଧୂ + ଆଗମନ = ବଧ୍ୱାଗମନ । ଅନୁ + ଏଷଣ = ଅନ୍ୱେଷଣ ।

**ଉ** କିମ୍ବା **ଊ** ପରରୁ **ଉ ଊ ଭିନ୍ନ** ସ୍ୱରବର୍ଣ୍ଣ ଥିଲେ, **ଉ ଊ** ଠାରେ **ବ୍** ହୁଏ । **ବ୍** ଓ ତା ପରବର୍ତ୍ତୀ ସ୍ୱର ପୂର୍ବ ବର୍ଣ୍ଣରେ ମିଶେ ।

**ମାତୃ ଅନୁରୂପ**—ଏଠାରେ 'ମାତୃ' ଏହାର ଶେଷରେ **ଋ** ଅଛି, 'ଅନୁରୂପ' ଏହାର ପ୍ରଥମରେ **ଋ ୠ ଭିନ୍ନ** ସ୍ୱରବର୍ଣ୍ଣ **ଅ** ଅଛି । **ଋ** ଠାରେ **ର୍** ହେଲା, **ର୍** ଓ **ଅ** 'ତ୍'ରେ '୍ର' ଫଳା ହୋଇ ମିଶିଲା । ମାତୃ + ଅନୁରୂପ = ମାତ୍ରନୁରୂପ । ସେହିପରି ପିତୃ + ଆଳୟ = ପିତ୍ରାଳୟ । ପିତୃ + ଉପଦେଶ = ପିତ୍ରୁପଦେଶ ।

**ଋ** ପରରୁ **ଋ ୠ ଭିନ୍ନ** ସ୍ୱରବର୍ଣ୍ଣ ଥିଲେ **ଋ** ଠାରେ **ର୍** ହୁଏ । **ର୍** ଓ ତା ପରବର୍ତ୍ତୀ ସ୍ୱର ପୂର୍ବ ବର୍ଣ୍ଣରେ ମିଶେ ।

**ନେ ଅନ**—ଏଠାରେ 'ନେ' ଏହାର ଶେଷରେ ଏ ଅଛି, 'ଅନ' ଏହାର ପ୍ରଥମରେ ସ୍ୱରବର୍ଣ୍ଣ ଅ ଅଛି ଏ ସ୍ଥାନରେ **ଅୟ୍** ହେଲା । **ଅୟ୍**ର ଅ 'ନ'ରେ ମିଶିଲା । ପରବର୍ତ୍ତୀ ସ୍ୱର (ଅନ ର ଅ) ଯ୍‌ରେ

ମିଶିଲା । ନେ+ଅନ=ନୟନ । ଶେ+ଅନ=ଶୟନ । ଚଳେ+ଅ
=ଚୟ ।

**ଏ** ଉତ୍ତରୁ ସ୍ୱରବର୍ଣ୍ଣ ଥିଲେ **ଏ** ସ୍ଥାନରେ ଅୟ୍ ହୁଏ । **ଅୟ୍**ର
**ଅ** ପୂର୍ବ ବର୍ଣ୍ଣରେ ମିଶେ । ପରବର୍ତ୍ତୀ ସ୍ୱର 'ୟ୍'ରେ ମିଶେ ।
(ଏ+ଅ=ଅୟ) ।

**ନୈ ଅକ**—ଏଠାରେ 'ନୈ' ଏହାର ଶେଷରେ **'ଐ'** ଅଛି,
'ଅକ' ଏହାର ପ୍ରଥମରେ ସ୍ୱରବର୍ଣ୍ଣ ଅ ଅଛି, **'ଐ'** ସ୍ଥାନରେ **ଆୟ୍**
ହେଲା । **ଆୟ୍**ର ଅ 'ନ୍'ରେ ମିଶିଲା, ପରବର୍ତ୍ତୀ ସ୍ୱର (ଅକ ର **ଅ**)
ୟ୍‌ରେ ମିଶିଲା । ନୈ+ଅକ=ନାୟକ । ବିନୈ+ଅକ=ବିନାୟକ

**ଐ** ଉତ୍ତରୁ **ସ୍ୱରବର୍ଣ୍ଣ** ଥିଲେ **ଐ** ସ୍ଥାନରେ **ଆୟ୍** ହୁଏ ।
**ଆୟ୍**ର **ଆ** ପୂର୍ବ ବର୍ଣ୍ଣରେ ମିଶେ । ପରବର୍ତ୍ତୀ ସ୍ୱର ୟ୍‌ରେ ମିଶେ
(ଐ+ଅ=ଆୟ) ।

**ପୋ ଅନ**—ଏଠାରେ 'ପୋ' ଏହାର ଶେଷରେ ଓ ଅଛି, 'ଅନ'
ଏହାର ପ୍ରଥମରେ ସ୍ୱରବର୍ଣ୍ଣ ଅ ଅଛି. 'ଓ' ସ୍ଥାନରେ 'ଅବ୍' ହେଲା,
ଅବ୍‌ର **ଅ** 'ପ'ରେ ମିଶିଲା । ପରବର୍ତ୍ତୀ ସ୍ୱର (ଅନ ର **ଅ**) **ବ୍**‌ରେ
ମିଶିଲା । ପୋ+ଅନ=ପବନ । ସେହିପରି ଭୋ+ଅନ=ଭବନ ।
ଗୋ+ଅଦ=ଗବାଦ ।

**ଓ** ଉତ୍ତରୁ ସ୍ୱରବର୍ଣ୍ଣ ଥିଲେ **ଓ** ସ୍ଥାନରେ ଅବ୍ ହୁଏ । ଅବ୍‌ରେ **ଅ**
ପୂର୍ବ ବର୍ଣ୍ଣରେ ମିଶେ, ପରବର୍ତ୍ତୀ ସ୍ୱର **ବ୍**‌ରେ ମିଶେ । (ଓ+ଅ=ଅବ)

**ଭୌ ଉକ**—ଏଠାରେ 'ଭୌ' ଏହାର ଶେଷରେ **ଔ** ଅଛି,
'ଉକ' ଏହାର ପ୍ରଥମରେ ସ୍ୱରବର୍ଣ୍ଣ **ଉ** ଅଛି, **ଔ** ସ୍ଥାନରେ **ଆବ୍**
ହେଲା । ଅବ୍ ର ଅ 'ଭ୍'ରେ ମିଶିଲା । ପରବର୍ତ୍ତୀ ସ୍ୱର 'ଉକ'ର

ଉ ବ୍‌ରେ ମିଶିଲା । ଭୌ+ଉକ=ଭାବୁକ । ପୌ+ଅକ=ପାବକ । ନୌ+ଇକ=ନାବିକ ।

**ଔ** ଉତ୍ତାରୁ ସ୍ୱରବର୍ଣ୍ଣ ଥିଲେ ଔ ସ୍ଥାନରେ **ଆବ୍** ହୁଏ । **ଆବ୍‌ର** **ଆ** ପୂର୍ବ ବର୍ଣ୍ଣରେ ମିଶେ । ପରବର୍ତ୍ତୀ ସ୍ୱର **ବ୍** ରେ ମିଶେ (ଔ+ଅ=ଆବ) ।

---

## ବ୍ୟଞ୍ଜନ ସନ୍ଧି

**ବ୍ୟଞ୍ଜନ** ବର୍ଣ୍ଣ ସହିତ ବ୍ୟଞ୍ଜନ ବର୍ଣ୍ଣର ଅଥବା ସ୍ୱରବର୍ଣ୍ଣର ମିଳନରେ ଯେଉଁ ସନ୍ଧି ହୁଏ, ତାହାକୁ **ବ୍ୟଞ୍ଜନ ସନ୍ଧି** କହନ୍ତି ।

**ତ୍** ଉତ୍ତାରୁ ଚ ଥିଲେ ଉଭୟ ମିଳି **ଚ୍ଚ** ହୁଏ । ଉତ୍+ଚାରଣ =ଉଚ୍ଚାରଣ । ସତ୍+ଚରିତ୍ର=ସଚ୍ଚରିତ୍ର ।

**ତ୍** ଉତ୍ତାରୁ ଛ ଥିଲେ ଉଭୟ ମିଳି **ଚ୍ଛ** ହୁଏ । ଉତ୍+ଛେଦ =ଉଚ୍ଛେଦ । ସତ୍+ଛାତ୍ର=ସଚ୍ଛାତ୍ର ।

**ତ୍** ଉତ୍ତାରୁ ଜ ଥିଲେ ଉଭୟ ମିଳି **ଜ୍ଜ** ହୁଏ । ସତ୍+ଜନ= ସଜ୍ଜନ । ଉତ୍+ଜ୍ୱଳ=ଉଜ୍ଜ୍ୱଳ ।

**ତ୍** ଉତ୍ତାରୁ **ଡ଼** ଥିଲେ ଉଭୟ ମିଳି ଡ୍‌ଡ୍ ହୁଏ । ଉତ୍+ଡ଼ୀନ =ଉଡ୍ଡୀନ ।

**ତ୍** ଉତ୍ତାରୁ **ହ** ଥିଲେ ଉଭୟ ମିଳି **ଦ୍ଧ** ହୁଏ । ତତ୍+ହିତ= ତଦ୍ଧିତ ।

**ତ୍** ଉତ୍ତାରୁ **ଟ** ଥିଲେ ଉଭୟ ମିଳି **ଟ୍ଟ** ହୁଏ । ଉତ୍+ଟଙ୍କନ =ଉଟ୍ଟଙ୍କନ ।

ସ୍ୱରବର୍ଣ୍ଣ ବର୍ଗର ତୃତୀୟ ବା ଚତୁର୍ଥ ବର୍ଣ୍ଣ କିମ୍ବା ଯ, ର, ଲ, ବ ପରେ ଥିଲେ, ବର୍ଗର ପ୍ରଥମ ବର୍ଣ୍ଣଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ ହୁଏ ।

**ଦିକ୍ ଅନ୍ତ**—ଏଠାରେ 'ଦିକ୍' ଏହାର ଶେଷରେ ବର୍ଗର ପ୍ରଥମ ବର୍ଣ୍ଣ **କ୍** ଅଛି, 'ଅନ୍ତ' ଏହାର ପ୍ରଥମରେ ସ୍ୱରବର୍ଣ୍ଣ **ଅ** ଅଛି, 'କ୍' ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ **ଗ୍** ହେଲା । ତା ଉପରୁ **ଗ୍** ରେ ସ୍ୱରବର୍ଣ୍ଣ ମିଶିଲା । ଦିକ୍ + ଅନ୍ତ = ଦିଗନ୍ତ । ସେହିପରି ସତ୍ + ଗତି = ସଦ୍ଗତି । ସତ୍ + ଭାବ = ସଦ୍ଭାବ । ଉତ୍ + ଯାପନ = ଉଦ୍‌ଯାପନ । ବାକ୍ + ରୋଧ = ବାଗ୍‌ରୋଧ । ସତ୍ + ବଂଶ = ସଦ୍‌ବଂଶ ।

'ନ' କିମ୍ବା 'ମ' ପରେ ଥିଲେ, ବର୍ଗର ପ୍ରଥମ ବର୍ଣ୍ଣଠାରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ହୁଏ । 'ଉତ୍' ନତି—ଏଠାରେ 'ଉତ୍' ଏହାର ଶେଷରେ ବର୍ଗର ପ୍ରଥମ ବର୍ଣ୍ଣ **ତ୍** ଅଛି, 'ନତି' ଏହାର ପ୍ରଥମରେ **ନ** ଅଛି, **ତ୍** ଠାରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ **ନ** ହେଲା । ଉତ୍ + ନତି = ଉନ୍ନତି । ଜଗତ୍ + ନାଥ = ଜଗନ୍ନାଥ । ତତ୍ + ମଧ୍ୟରୁ = ତନ୍ମଧ୍ୟରୁ ।

**ଚ୍** କିମ୍ବା **ଜ୍** ଉପରୁ **ନ** ଥିଲେ, **ନ** ଠାରେ ଞ ହୁଏ । ଯାଚ୍ + ନା = ଯାଚ୍ଞା । ଯଜ୍ + ନ = ଯଜ୍ଞ ।

**ବିସର୍ଗ** ଉପରୁ **ଚ** ଥିଲେ ଉଭୟ ମିଳି ଶ୍ଚ ହୁଏ । ଃ + ଚ = ଶ୍ଚ, କଃ + ଚିତ୍ = କଶ୍ଚିତ୍ । କଃ + ଚଳ = କଶ୍ଚଳ ।

**ବିସର୍ଗ** ଉପରୁ **ଟ** ଥିଲେ ଉଭୟ ମିଳି **ଷ୍ଟ** ହୁଏ । ଃ + ଟ = ଷ୍ଟ, ଧନୁଃ + ଟଙ୍କାର = ଧନୁଷ୍ଟଙ୍କାର ।

**ବିସର୍ଗ** ଉପରୁ ତ୍ ଥିଲେ ଉଭୟ ମିଳି **ସ୍ତ** ହୁଏ । ଃ + ତ = ସ୍ତ । କଃ + ତାର = କସ୍ତାର ।

ସ୍ୱରବର୍ଣ୍ଣ ବର୍ଗର ତୃତୀୟ, ଚତୁର୍ଥ ବା ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଲ, ବ, ହ ପରେ ଥିଲେ ଅକାର ପର ସ୍ଥିତ ର୍ ଜାତ ବିସର୍ଗ ଠାରେ **ର୍** ହୁଏ ।

ପୁନଃ + ଉକ୍ତ = ପୁନରୁକ୍ତ । ଅନ୍ତଃ + ଆତ୍ମା = ଅନ୍ତରାତ୍ମା । ପୁନଃ + ଜନ୍ମ = ପୁନର୍ଜନ୍ମ । ଅନ୍ତଃ + ଧାନ = ଅନ୍ତର୍ଧାନ । ଅନ୍ତଃ + ଯାମୀ = ଅନ୍ତର୍ଯାମୀ ।

ସ୍ୱରବର୍ଣ୍ଣ ବର୍ଗର ତୃତୀୟ, ଚତୁର୍ଥ ବା ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଲ, ବ, ହ ପରେ ଥିଲେ, ଅ ଆ, ଭିନ୍ନ ସ୍ୱରବର୍ଣ୍ଣ ଉତ୍ତରୁ ସକଳ ବିସର୍ଗଠାରେ ର୍ ହୁଏ ।

ନିଃ + ଆକାର = ନିରାକାର । ନିଃ + ଉତ୍ତର = ନିରୁତ୍ତର । ବହିଃ + ଗତ = ବହିର୍ଗତ । ମୁହୁଃ + ମୁହୁ = ମୁହୁର୍ମୁହୁଃ । ଦୁଃ + ଯୋଗ = ଦୁର୍ଯୋଗ । ଆଶୀଃ + ବାଦ = ଆଶୀର୍ବାଦ । ଦୁଃ + ନାମ = ଦୁର୍ନାମ । ନିଃ + ଲେଭ = ନିର୍ଲୋଭ ।

---

## ସମାସ

ଦୁଇ ବା ତହିଁରୁ ଅଧିକ ପଦ ମିଳି ଗୋଟିଏ ପଦ ହେଲେ ତାହାକୁ ସମାସ କହନ୍ତି ।

## ଦ୍ୱନ୍ଦ୍ୱ ସମାସ

ସୀତା ଓ ରାମ = ସୀତାରାମ । ଫୁଲ ଓ ଫଳ = ଫୁଲଫଳ । ଦିନ ଓ ରାତି = ଦିନରାତି । ବାଆ ଓ ପାଣି = ବାପାଣି । ବାଟ ଓ ଘାଟ = ବାଟ-ଘାଟ । ପତ୍ର, ପୁଷ୍ପ ଓ ଫଳ = ପତ୍ରପୁଷ୍ପଫଳ । ଯେଉଁ ପଦ ଗୁଡ଼ିକରେ ଦ୍ୱନ୍ଦ୍ୱ ସମାସ ହୁଏ, ସେ ଗୁଡ଼ିକ ବିଶେଷ୍ୟ ପଦ ।

## କର୍ମଧାରୟ ସମାସ

ନୀଳ ଉତ୍ପଳ = ନୀଳୋତ୍ପଳ । ପୂର୍ଣ୍ଣ ଚନ୍ଦ୍ର = ପୂର୍ଣ୍ଣଚନ୍ଦ୍ର । ବଡ଼ ଦେଉଳ = ବଡ଼ଦେଉଳ । ଲମ୍ବ ପଣ୍ଡିତ = ଲମ୍ବପଣ୍ଡିତ ।

ଯେଉଁ ଦୁଇପଦରେ ଏହି ସମାସ ହୁଏ, ତନ୍ମଧ୍ୟରୁ ପ୍ରଥମଟି ବିଶେଷଣ ଏବଂ ଶେଷଟି ବିଶେଷ୍ୟ ।

## ବହୁବ୍ରୀହି ସମାସ

ଲମ୍ବ ଉଦର ଯାହାର ସେ 'ଲମ୍ବୋଦର' । ବୀଣା ପାଣିରେ ଯାହାର ସେ 'ବୀଣାପାଣି' । ଶଶ ଅଙ୍କରେ ଯାହାର ସେ 'ଶଶାଙ୍କ' । ଲମ୍ବ ମୂର୍ଦ୍ଧା ଯାହାର ସେ (ପୁରୁଷ) 'ଲମ୍ବମୂର୍ଦ୍ଧା' । ଲମ୍ବ ମୂର୍ଦ୍ଧା ଯାହାର ସେ (ସ୍ତ୍ରୀ) 'ଲମ୍ବମୂର୍ଦ୍ଧି' ।

## ତତ୍ପୁରୁଷ ସମାସ

### ଦ୍ୱିତୀୟା ତତ୍ପୁରୁଷ

ହସ୍ତକୁ ଗତ = ହସ୍ତଗତ । ଅଙ୍କକୁ ଆଗତ = ଅଙ୍କାଗତ । ବୃଦ୍ଧିକୁ ପ୍ରାପ୍ତ = ବୃଦ୍ଧିପ୍ରାପ୍ତ । ଶରଣକୁ ଆଗତ = ଶରଣାଗତ ।

### ତୃତୀୟା ତତ୍ପୁରୁଷ

ହାତରେ ଲେଖା = ହାତଲେଖା । ମୂଷାଦ୍ୱାରା ଖିଆ = ମୂଷାଖିଆ । କୁକୁର ଦ୍ୱାରା ଛୁଆଁ = କୁକୁର ଛୁଆଁ । ଧନ ଦ୍ୱାରା ପୂର୍ଣ୍ଣ = ଧନପୂର୍ଣ୍ଣ । ବାତ ଦ୍ୱାରା ଆହତ = ବାତାହତ । ଶ୍ରୀ ଦ୍ୱାରା ଯୁକ୍ତ = ଶ୍ରୀଯୁକ୍ତ । ମଦରେ ମତ୍ତ = ମଦମତ୍ତ ।

### ଚତୁର୍ଥୀ ତତ୍ପୁରୁଷ

ବିପ୍ରଙ୍କୁ ଦତ୍ତ = ବିପ୍ରଦତ୍ତ । ରାଜାଙ୍କୁ ଦେୟ = ରାଜଦେୟ ।

### ପଞ୍ଚମୀ ତତ୍ପୁରୁଷ

ସଂସାରରୁ ଛଡ଼ା = ସଂସାରଛଡ଼ା । କୃଷିରୁ ଜାତ = କୃଷିଜାତ ।

ହସ୍ତରୁ ଚ୍ୟୁତ = ହସ୍ତଚ୍ୟୁତ । ଯୂଥରୁ ଭ୍ରଷ୍ଟ = ଯୂଥଭ୍ରଷ୍ଟ । ମଳରୁ ଗଢ଼ା = ମଳଗଢ଼ା ।

### ଷଷ୍ଠୀ ତତ୍ପୁରୁଷ

ନଈର ପାଣୀ = ନଈପାଣୀ । ବାଡ଼ର ବାଇଗଣ = ବାଡ଼ବାଇଗଣ । ମୂଳିଆର ମୂଲ = ମୂଳିଆମୂଲ । ଆଖିର ପତା = ଆଖିପତା । ବାଘର ଛାଲ = ବାଘଛାଲ । ଗାଁର ମୁଣ୍ଡ = ଗାଁମୁଣ୍ଡ । କର୍ମର ଫଳ = କର୍ମଫଳ । ପର୍ବତର ଶୃଙ୍ଗ = ପର୍ବତଶୃଙ୍ଗ ।

### ସପ୍ତମୀ ତତ୍ପୁରୁଷ

ନଈରେ ଗାଧୁଆ = ନଈଗାଧୁଆ । ପର୍ବତରେ ଭୋଜ = ପର୍ବତଭୋଜ । ଜଳରେ ମଗ୍ନ = ଜଳମଗ୍ନ । ପୁରୁଷମାନଙ୍କ ମଧ୍ୟରେ ଉତ୍ତମ = ପୁରୁଷୋତ୍ତମ ।

### ଅବ୍ୟୟୀଭାବ ସମାସ

ବିଧି ଅନୁକ୍ରମେ = ଯଥାବିଧି । ଜାନୁପର୍ଯ୍ୟନ୍ତ = ଆଜାନୁ । ଦିନକୁ [illegible]ନ = ପ୍ରତିଦିନ । ଭିକ୍ଷାର ଅଭାବ = ଦୁର୍ଭିକ୍ଷ । କୂଳର ସମୀପ = [illegible]କୂଳ । ଅବ୍ୟୟୀଭାବ ସମାସରେ ଯେଉଁ ପଦ କହିଲ ହୁଏ, ତା ଆଗରେ ଅବ୍ୟୟ ବସିଥାଏ ।

ବ୍ରହ୍ମପୁର ଷ୍ଟୋର ପ୍ରେସ୍‌ରେ ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା ମୁଦ୍ରିତ ।